# କାବ୍ୟ-କବିତା

ସଂକଳକଗଣ

ଅଧ୍ୟାପକ କ୍ଷେତ୍ରବାସୀ ନାୟକ, ଏମ୍. ଏ.

ଅଧ୍ୟାପକ ରତ୍ନାକର ଚଇନି, ଏମ୍. ଏ.

ଓଡ଼ିଆ ବିଭାଗ

ରାଜେନ୍ଦ୍ର କଲେଜ, ବଲାଙ୍ଗୀର

ସାଥୀ ମହଲ

ପ୍ରକାଶକ :
ଶ୍ରୀ ରାଧାଶ୍ୟାମ ମହାନ୍ତି
ସାଥୀ ମହଲ
ବିନୋଦବିହାରୀ, କଟକ-୨

ମୂଲ୍ୟ—ତିନି ଟଙ୍କା



ପ୍ରଥମ ପ୍ରକାଶ—୧୯୭୦

ମୁଦ୍ରାକର :
ଶ୍ରୀ ଚନ୍ଦ୍ରଚରଣ ସାହୁ
ବିଜୟା ପ୍ରିଣ୍ଟର୍ସ
ବକ୍ସିବଜାର, କଟକ-୧

ଯେଉଁ କବିମାନଙ୍କର କାବ୍ୟ-କବିତାରେ ଏ ଗ୍ରନ୍ଥଟି ସମୃଦ୍ଧ

ଏବଂ

ଯେଉଁମାନଙ୍କର ଉପାଦେୟ ପରାମର୍ଶରେ

ଏ ଗ୍ରନ୍ଥଟି ସର୍ବାଙ୍ଗସୁନ୍ଦର କରିବାକୁ

ଆମେ ଚେଷ୍ଟା କରିଛୁ,

ତାଙ୍କ ନିକଟରେ

ଆମେ କୃତଜ୍ଞ

—ସଂକଳକଗଣ

# ଓଡ଼ିଆ କାବ୍ୟ-କବିତାର କଥା

କବିତା ସାରସ୍ୱତ ସୃଷ୍ଟିର ସର୍ବୋତ୍କୃଷ୍ଟ କଳା । ସମାଜ ସୃଷ୍ଟିର ବହୁ ପୂର୍ବରୁ ଆବେଗ ଅଧୀର ମାନବ-ପ୍ରାଣର ଅନ୍ତର୍ଭୂମିରେ କବିତାର ଉନ୍ମେଷ ସାଧିତ ହୋଇଥିଲା । କିନ୍ତୁ ସଂହତ ସମାଜର ପରିପ୍ରେକ୍ଷୀ ତା'ର ପରିପୁଷ୍ଟି ସଂଭବ କଲା । ଜୀବନର ଆଦି ପ୍ରସ୍ତୁ ନିରଳଂକାର ଓ ନିସ୍ପୃହ ରୂଢ଼ଧାରାରେ ଗଢ଼ି ଉଠିଲାପରି କବିତାର ଆଦି ସ୍ୱର ଅଯତ୍ନ ଲାଳିତ ଓ ଅମାର୍ଜିତ ହୋଇ ପ୍ରକାଶ ପାଇଥିଲା । କିନ୍ତୁ ବିକାଶ ଓ ବିବର୍ତ୍ତନର ତରଂଗରେ କବିତାର ବାଲଦୀପ ବର୍ଣ୍ଣ ବିଚିତ୍ର ହୋଇଉଠିଲା । ଶ୍ରାବଣୀ ଆକାଶର ମେଘମା, ଶରତ ଆକାଶର ଶୁଭ୍ରତାରେ ଆତ୍ମରୋପନ କଲାପରି ଆଦିମ କାବ୍ୟ-ରୂପର ଅସ୍ପଷ୍ଟତା କାଳର ପ୍ରବାହରେ, ସ୍ରଷ୍ଟାର ରୁଚି ଓ ଦୃଷ୍ଟିର ବଳସ୍ପରେ କ୍ରମଶଃ ବର୍ଣ୍ଣଭାସ୍ୱର ହୋଇଉଠିଲା । ସାହିତ୍ୟର ସୃଷ୍ଟି କେନ୍ଦ୍ରରେ ଆଦ୍ୟ ଉଚ୍ଚାରିତ ଏହି କବିତାର ପ୍ରାଣମନ୍ତ୍ର; ସାରସ୍ୱତ ସୃଷ୍ଟିର ଦିନପଞ୍ଜିରେ, ଜାତିର ଇତିହାସରେ, ସମାଜର ଜାତକରେ ଓ ବ୍ୟକ୍ତିର ଚୈତନ୍ୟରେ ଏକ ନୂତନ ସ୍ୱରୂପ ଧାରଣ କଲା । ସର୍ବୋତ୍କୃଷ୍ଟ କଳାକୃତି ଏହି କବିତା ନେଲା ଜନ୍ମାନ୍ତର ।

କାବ୍ୟ-ବିଭୂତି ବିଭୂଷିତ ବାଲ୍ମୀକିଙ୍କ ଆଦ୍ୟ ଉଚ୍ଚାରଣ ଆବେଗର ଯେଉଁ ଶିହରଣ ଓ ପ୍ରେରଣାର ରସଧାରା ସିଞ୍ଚି ଦେଇଥିଲା, ହୋମର ଓ ଚସର ଆଦି ସାହିତ୍ୟ-ସ୍ରଷ୍ଟାଙ୍କର ଶିଳ୍ପ

ସଂଗୀତର ତୃଷା କିନ୍ତୁ ରସବ୍ୟଂଜନା ବାଢ଼ି ନ ଥିଲା । ତେଣୁ ବିଶ୍ୱ ସାହିତ୍ୟର ସୃଷ୍ଟିପଥରେ କାବ୍ୟ-କବିତାର ଆଦିମତା ଯେପରି ସର୍ବଗୃହୀତ, ପ୍ରାଚୀନ ଭାରତୀୟ ସାହିତ୍ୟର ଇତିହାସ ପୃଷ୍ଠାରେ ଏହାର ସୃଷ୍ଟି ମଧ୍ୟ ତଦ୍ରୂପ ସ୍ୱୀକୃତ । ଓଡ଼ିଆ ସାହିତ୍ୟର ଆଦ୍ୟ ଉଚ୍ଚାରଣ କବିତାର ମାଧ୍ୟମକୁ ହିଁ ଅବଲମ୍ବନ କରି ସଂଭବ ହୋଇଥିଲା । ସୃଷ୍ଟିର କ୍ରମଗତିରେ କବିତା ତାହାର କାୟା ପରିବର୍ତ୍ତିତ କରି ନୂତନତାର ପଦଚିହ୍ନ କାଳର ପ୍ରତିଟି ପ୍ରହରରେ ଆଙ୍କି ଯାଇଛି । ସ୍ଥିତିସର୍ବସ୍ୱ ନ ହୋଇ, ସେ ହୋଇଛି ଗତିଚଂଚଳ ।

ପ୍ରାଚୀନ ରସଧାରା 'ବର୍ତ୍ତମାନ'କୁ ବଦଳାଇଛି । ଅନାଗତ-ଭବିଷ୍ୟତର ନୂତନ ସଂଯୋଜନାପାଇଁ 'ବର୍ତ୍ତମାନ' ନୂତନ କ୍ଷେତ୍ର ପ୍ରସ୍ତୁତ କରିଛି । ଅତୀତ, ଅତୀତରେ ମିଶିଛି । ଏଇ ବିବର୍ତ୍ତନ ବିମୂଳରେ ରହିଛି କବି ମାନସର ନବୋନ୍ମେଷ । କବିତାର ବପୁ ଘଟିନି; ନିତ୍ୟ ନୂତନ ରସଧାରାରେ ସ୍ଫୀତବକ୍ଷା ହୋଇ ବହି ଚାଲିଛି କବିତା-ନିର୍ଝରିଣୀ । ତାହାର ଅମ୍ବାରେ ଲାଗି ରହିଛି ଆପଣାର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସମ୍ଭାବନା । ସୁତରାଂ କବିତାର ରୂପାବସ୍ଥା ଅବଧାରଣପାଇଁ, ଗୋଟିଏ ଜାତିର ଭାବୋଚ୍ଛଳ ଜୀବନଶକ୍ତିର ମୂଲ୍ୟାୟନପାଇଁ କାବ୍ୟ-କବିତାର ଅତୀତ ଓ ବର୍ତ୍ତମାନକୁ ଅଧ୍ୟୟନ କରିବା ଏକାଂତ ବାଂଛନୀୟ । ସେଇ ଆବଶ୍ୟକତାକୁ ଆଖି ଆଗରେ ରଖି ଓଡ଼ିଆ କାବ୍ୟ-କବିତାର ଇତିକଥା ଏଇ ଅବସରରେ ଆଲୋଚନା କରାଯାଉଛି ।

ଓଡ଼ିଆ ଭାଷା-ସାହିତ୍ୟର ଆଦିମ ସଂକେତ ଚର୍ଯ୍ୟାପଦର ପଦ୍ୟାବଳୀରେ ପରିଲକ୍ଷିତ ହୋଇଥିଲା । ଓଡ଼ିଆ ସାହିତ୍ୟର

ଐତିହାସିକମାନଙ୍କ ମତରେ ଏହାର ରଚନା କାଳ ସପ୍ତମରୁ ଦଶମ ଶତାବ୍ଦୀ ମଧ୍ୟରେ ପରିବ୍ୟାପ୍ତ । ଏହାର ଭାଷା ସାଂକେତିକ, ଶବ୍ଦବହୁଳ ଓ ଦ୍ୱିଅର୍ଥବୋଧକ । ଏଥିରେ ବ୍ୟବହୃତ ଶବ୍ଦାବଳୀ ପ୍ରାଚୀନ ଓଡ଼ିଆ । ଭାଷାର ବିବର୍ତ୍ତନ ଦୃଷ୍ଟିରୁ ଏହା ଆମ ସାହିତ୍ୟର ଆଦ୍ୟତମ ରଚନାରୂପେ ସ୍ୱୀକୃତ । ଏଥିରେ ପ୍ରତିଫଳିତ ଧର୍ମ ଧାରଣା, ଇତିହାସ ତଥ୍ୟ ଓ ସାହିତ୍ୟିକ ଚିନ୍ତା ଆଦି ବିଚାର କଲେ ଏହା ଆମର ପ୍ରାଚୀନ ରଚନା ବୋଲି ମଧ୍ୟ ପ୍ରମାଣିତ ହୋଇଥାଏ । ଚର୍ଯ୍ୟାପଦରେ ପ୍ରବର୍ତ୍ତିତ ଧର୍ମଦର୍ଶନ ଶୂନ୍ୟବାଦ ସହଜିଆ ଧର୍ମଦର୍ଶନ; ଯାହାର ଉତ୍ପତ୍ତି, ପ୍ରସାର ଓ ପରିପୁଷ୍ଟି ଏହି ଉତ୍କଳରେ ହିଁ ସମ୍ଭବ ହୋଇଥିଲା । ଏହି ମତବାଦର ପ୍ରବର୍ତ୍ତକ ଥିଲେ ଉତ୍କଳର ରାଜା ଇନ୍ଦ୍ରଭୂତି ଓ ତାଙ୍କ ଭଗ୍ନୀ ରାଜକନ୍ୟା ଲକ୍ଷ୍ମୀଙ୍କରା । ଏତଦ୍‌ଭିନ୍ନ ଚର୍ଯ୍ୟାପଦର ରଚୟିତାମାନଙ୍କ ମଧ୍ୟରୁ ଲୁଇପା, ହାଡ଼ିପା, କାହ୍ନୁପା ଆଦି ଅନେକଙ୍କର ଜନ୍ମ ଏହି ଓଡ଼ିଶାରେ ହୋଇଥିଲା । ତେଣୁ ଚର୍ଯ୍ୟାପଦ ଯେ ଓଡ଼ିଆ ସାହିତ୍ୟର ପ୍ରାଥମିକ ନିଦର୍ଶନ, ଏହା ନିଃସଂଦେହ ।

ଏହା ଆମ ଭାଷା-ସାହିତ୍ୟର ଆଦ୍ୟତମ ସୃଷ୍ଟି ହେଲେ ବି ଏଥିରେ ଧର୍ମ, ଦର୍ଶନ ଓ ଆଧ୍ୟାତ୍ମିକ ଚେତନାର ସ୍ୱର ଯେତେ ଉଦାତ୍ତ କଣ୍ଠରେ ସ୍ଫୁରିତ, ସାହିତ୍ୟିକ ଆବେଗର ନିଃସରଣ ସେତେ ସ୍ୱତଃସ୍ଫୂର୍ତ୍ତ ନୁହେଁ । ସାହିତ୍ୟଠାରୁ ସଂସ୍କୃତିର ଚେତନା ଏଥିରେ ପ୍ରଚୁର । କଳାବୋଧଠାରୁ ଦାର୍ଶନିକ ମତବାଦର ପ୍ରକ୍ଷେପଣ ଏଥିରେ ଅଧିକ । ଜୀବନର ଚିତ୍ର ପରିସ୍ଫୁଟନ ଅପେକ୍ଷା ଜୀବେତର ଜଗତର ତାତ୍ତ୍ୱିକ ବିଶ୍ଳେଷଣପ୍ରତି ସିଦ୍ଧାଚାର୍ଯ୍ୟମାନେ ବିଶେଷ ଧ୍ୟାନ ଦେଇଥିବା ଜଣାଯାଏ । ଏମାନେ ସମସ୍ତେ

ଦାର୍ଶନିକ ଓ ଚିନ୍ତକ । କବିତାର ନିର୍ମଳତା ଏମାନଙ୍କଠାରେ ଦୃଷ୍ଟିଗ୍ରାହ୍ୟ । ତଥାପି ଏହା ଯେ ଆମ ସାହିତ୍ୟର ଆଦିମ ସ୍ୱରୂପ, ଏଥିରେ ସଂଦେହ ନାହିଁ । ଏଇ ସୃଷ୍ଟିଧାରା ଶତାବ୍ଦୀ ଶତାବ୍ଦୀ ବ୍ୟାପି ଓଡ଼ିଆ ସାହିତ୍ୟକୁ ନିଶ୍ଚୟ ଅଧିକ ଅଚ୍ଛନ୍ନ କରି ରଖିଥିଲା । ଏପରି କି ଚତୁର୍ଦ୍ଦଶ ଶତକ ପର୍ଯ୍ୟନ୍ତ ଓଡ଼ିଆପ୍ରାଣର ନିର୍ମଳ ଅଭିବ୍ୟକ୍ତି ସମ୍ଭବ ହୋଇପାରି ନ ଥିଲା । ତାହା ସତେ ଯେପରି ଅପେକ୍ଷା କରିଥିଲା, ଆଦି କବିଙ୍କ ଆଦ୍ୟ ଓଁକାରକୁ ।

ଦୋହା ପରବର୍ତ୍ତୀ କାଳରୁ ସାରଳା ଦାସଂକ ଅଭ୍ୟୁଦୟ ପର୍ଯ୍ୟନ୍ତ ପରିବ୍ୟାପ୍ତ ସମସ୍ତ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ନିର୍ଜୀବ ସମୟ । ସାହିତ୍ୟିକ ସାଧନାର ସ୍ୱୀକୃତି ଏ ଯୁଗର ମହିମା ବର୍ଦ୍ଧନ କରିନାହିଁ; ବରଂ ଧର୍ମ ସାଧନା ରଖିଯାଇଛି ଏ ଯୁଗରେ ଆପଣାର ବଳିଷ୍ଠ ସଂକେତ । ତଥାପି ଏଇ ସାହିତ୍ୟିକ ଶୂନ୍ୟତା ଓ ରସବୋଧର ଅନୁର୍ବରତା ଭିତରେ ଓଡ଼ିଆ ଜୀବନ ଓ ସଂସ୍କୃତି ବଂଚି ରହିଥିଲା, ଧର୍ମଧ୍ୟାନକୁ ଏକାଂତ ଉପଜୀବ୍ୟ କରି । ଏହି ସମୟରେ ନାଥପନ୍ଥୀ ସାଧକମାନଙ୍କର ଅବଦାନ ଓଡ଼ିଆ ସାହିତ୍ୟର ଭଣ୍ଡାରକୁ ପୂର୍ଣ୍ଣ କରିଥିଲା । ଏହି ନାଥ ଧର୍ମ ସମ୍ପୂର୍ଣ୍ଣ ଏକ ନୂତନ ଧାରଣା ନୁହେଁ; ହୁଏତ ଶୂନ୍ୟବାଦୀ ବୌଦ୍ଧ ଧର୍ମଧାରାର ଏକ ରୂପାନ୍ତରିତ ସଂସ୍କରଣ । 'ନାଥ ସାହିତ୍ୟ'ରେ ବୌଦ୍ଧ ମତବାଦର ସାଂକେତିକ ତଥା ରୂପକାତ୍ମକ ପ୍ରକାଶ ଘଟିଥିଲା । ଯୋଗାଭ୍ୟାସ, ସାଂସାରିକ ଅନାସକ୍ତି ଓ ନିର୍ବାଣ ବା ମୁକ୍ତି ମଧ୍ୟରେ ଏହା ନିମଜ୍ଜିତ ହୋଇ ରହିଥିଲା । 'ଶିଶୁବେଦ' ଏହି କାଳର ସୃଷ୍ଟି ଓ ଓଡ଼ିଆ କାବ୍ୟଧାରାର କ୍ରମବିକାଶରେ ଏକ ପ୍ରାମାଣିକ ଗ୍ରନ୍ଥ । ଶୂନ୍ୟବାଦୀ ଚେତନାର ସ୍ରୋତଧାରା ମାତ୍ର କେତୋଟି ଶତାବ୍ଦୀ ଭିତରେ

ସୀମିତ ନ ହୋଇ ଏହା ଭବିଷ୍ୟତର ଅନାଗତ ସମୟରେଖାକୁ ସ୍ପର୍ଶ କରିଥିଲା । ଧର୍ମ, ସାହିତ୍ୟର ଭାବ-ରାଜ୍ୟରେ ବହୁକାଳ ପର୍ଯ୍ୟନ୍ତ ପ୍ରାଧାନ୍ୟ ବିସ୍ତାର କଲା । ଓଡ଼ିଆ କବି ଶୂନ୍ୟବାଦୀ ଦର୍ଶନ ସମେତ ଶୈବ ଦର୍ଶନକୁ ସାହିତ୍ୟ ପଟରେ ପ୍ରଚ୍ଛର କଲା । ଅବଶ୍ୟ କଳସା ଚଉତିଶା, ରୁଦ୍ର ସୁଧାନିଧି ଓ କେତେକ ବ୍ରତକଥାରେ ଏହି ଶୈବ ଚେତନାର ପ୍ରକାଶ ଘଟିଥିଲେ ବି ଜୀବନଧର୍ମୀ ଅଭିବ୍ୟକ୍ତି ହେତୁ କେତେକାଂଶରେ ତାହା ମାନବୀୟ ମୂଲ୍ୟ ପ୍ରତିଷ୍ଠା କରିବାରେ ଯତ୍ନଶୀଳ ହୋଇଥିଲା । ଧର୍ମର ଆବେଷ୍ଟନୀରୁ ମୁକ୍ତ ହେବାପାଇଁ ସାମାନ୍ୟ ଚେଷ୍ଟା କରି ବି କରି ପାରି ନ ଥିଲା କବି । ରୁଦ୍ର ସୁଧାନିଧି ପଦ୍ୟ-ଗଦ୍ୟଧର୍ମୀ ଏକ ସୃଷ୍ଟି, ଯେଉଁଥିରେ କି ଉଭୟର ଧର୍ମ-ସୁସଂହତି ଅଛି । ତେଣୁ ପଞ୍ଚ ଦଶ ଶତକର ଅପରାହ୍ଣରେ ଆଦି କବିଙ୍କର ଅଭ୍ୟୁଦୟ ଓଡ଼ିଆ ପ୍ରାଣର ନିଜସ୍ୱ ଅଭିବ୍ୟକ୍ତି ପାଇଁ ଦାୟୀ ହୋଇ ରହିଲା ।

ସାରଳା ଦାସ ଓଡ଼ିଶାର ପ୍ରାଣସ୍ୱରୂପକୁ ଯେପରି ସ୍ୱତୋଚ୍ଛଳ ଭଙ୍ଗୀରେ ଓ ଆତ୍ମୀୟ ଭାଷା ଭଙ୍ଗିରେ ପ୍ରକାଶ କରିପାରିଥିଲେ, ତତ୍‌ପୂର୍ବରୁ ଅନ୍ୟ କୌଣସି କଳାକାର ସେଇ ଉଦ୍ୟମରେ ସଫଳ ହୋଇ ନ ଥିଲେ ।

ଆଦିକବି ଓଡ଼ିଆ ଜାତିର ଏକାନ୍ତ ବିଶ୍ୱସ୍ତ ଓ ଆତ୍ମୀୟ କବି । ଓଡ଼ିଆ ଜାତୀୟ-ଜୀବନ, ସଂସ୍କୃତି ଓ ସମାଜ, ତାଙ୍କ କାବ୍ୟରେ ଜୀବନ୍ତରୂପେ ରୂପାୟିତ । ତାଙ୍କର ଶ୍ରେଷ୍ଠ କୃତି 'ସାରଳା ମହାଭାରତ' ଓଡ଼ିଆ ଜାତୀୟ-ଜୀବନର ମହାକାବ୍ୟ । ଇଂରେଜୀ ସାହିତ୍ୟ ଚସରଙ୍କୁ କେନ୍ଦ୍ର କରି ଯେପରି ନିଜସ୍ୱ ଅଭିବ୍ୟକ୍ତିରେ ମର୍ଯ୍ୟାଦା ଲାଭ କରିଥିଲା, ଠିକ୍ ସେହିପରି ସାରଳା ଦାସଙ୍କୁ ଲାଭକରି ଓଡ଼ିଆ ସାହିତ୍ୟର

ଆତ୍ମଗୌରବ ପ୍ରତିଷ୍ଠିତ ହେଲା । ସଂସ୍କୃତ ପ୍ରଭାବରୁ ମୁକ୍ତ ହୋଇ ସାରଳାଙ୍କର କାବ୍ୟ ସୃଷ୍ଟିରେ ଦେଶପ୍ରୀତି ଉଚ୍ଚାରିତ ହେଲା । ତାଙ୍କର ପ୍ରତ୍ୟେକ ଚରିତ୍ର ମହାଭାରତୀୟ ମର୍ଯ୍ୟାଦା ଲାଭ କରିବା ସଙ୍ଗେ ସଙ୍ଗେ ଉତ୍କଳୀୟ ଜୀବନର ଲୌକିକ ମର୍ଯ୍ୟାଦାରେ ସମନ୍ୱିତ ହୋଇଉଠିଲେ । ଏପରି କି ଯୁଧିଷ୍ଠିର, ଭୀମ, ଅର୍ଜୁନ ଆଦି ପ୍ରତ୍ୟେକ ଉତ୍କଳୀୟ ବୀରରୂପେ ଗଣଚେତନାର ପ୍ରମୂର୍ତ୍ତି ହେଲେ । ମହାଯାତ୍ରୀ ପାଣ୍ଡବ ବୀରମାନଙ୍କୁ କବି ଉତ୍କଳର ଚିତ୍ରୋତ୍ପଳା, ବୈତରଣୀ ଆଦି ପବିତ୍ର ତୀର୍ଥରେ ତୀର୍ଥାଟନ କରାଇବାକୁ ଭୁଲି ନ ଥିଲେ । ଓଡ଼ିଆ ସମାଜ ଚଳଣିର ସାଧାରଣ ଚରିତ୍ରରୂପେ, କୃଷିଜୀବୀ ସମାଜର ପ୍ରତିନିଧିରୂପେ କିଂବା ଜାତୀୟ ଶୌର୍ଯ୍ୟ ଓ ସାମର୍ଥ୍ୟର ପ୍ରତୀକରୂପେ ସାରଳାଙ୍କର ମହାଭାରତୀୟ ଚରିତ୍ରମାନେ ଆତ୍ମପ୍ରକାଶ କରିଥିଲେ । ଲୋକ-କବି ସାରଳା ଦାସଙ୍କର ଲୋକମୁଖୀ ଆଭିମୁଖ୍ୟ ପରବର୍ତ୍ତୀ ଯୁଗର ସାଧକ କବି ଜଗନ୍ନାଥ ଦାସଙ୍କର ଭାଗବତ ଓ ବଳରାମଙ୍କର ରାମାୟଣ ଏବଂ ଅଚ୍ୟୁତାନନ୍ଦଙ୍କର ହରିବଂଶ ଇତ୍ୟାଦିରେ ଅକ୍ଷୁଣ୍ଣ ରହିଥିଲା । ସେହି ଲୋକକଣ୍ଠର ଭାଷା, ଲୋକ ପ୍ରବୃତ୍ତିର ପ୍ରକାଶନ ଓ ଲୋକ ଚରିତ୍ରର ଅନୁଧ୍ୟାନ ସେମାନଙ୍କ ସୃଷ୍ଟିର ଆଭିମୁଖ୍ୟ ହୋଇଉଠିଲା । ଅବଶ୍ୟ ଏହି ଯୁଗରେ ମଧ୍ୟ ସାହିତ୍ୟ ଧର୍ମଧାରାରୁ ବିଚ୍ଛିନ୍ନ ହୋଇପାରି ନ ଥିଲା । ତେଣୁ ଅସଂଖ୍ୟ ଭଜନ, ଜଣାଣ, ଆଖ୍ୟାୟିକା, କାବ୍ୟ ଓ ସାଧନ ଗ୍ରନ୍ଥରେ ସେହି ଧର୍ମର ସ୍ୱର ପଞ୍ଚସଖାଙ୍କ ଦ୍ୱାରା ସ୍ଫୁରିତ ହୋଇଥିଲା । ଧର୍ମ, ଭକ୍ତି, ପ୍ରେମ ଓ ଜ୍ଞାନକୁ ଭିତ୍ତିକରି ପ୍ରସାରିତ ଓ ପ୍ରସ୍ଫୁରିତ ହୋଇଥିଲା । ଚୈତନ୍ୟଙ୍କ ସଂସର୍ଗ ଲାଭହେତୁ ଓଡ଼ିଶାରେ ଧର୍ମ ଚେତନାର ପ୍ଲାବନ ଘଟିବା ସଙ୍ଗେ ସଙ୍ଗେ ଭକ୍ତିପ୍ରେମର ସ୍ରୋତ

ନିରଂକୁଶ ଭାବେ ପ୍ରାଧାନ୍ୟ ହେଲା । ଜୟଦେବଙ୍କ ଗୀତଗୋବିନ୍ଦ ଏହା ପୂର୍ବରୁ ଅବଶ୍ୟ ଓଡ଼ିଶାରେ ପ୍ରେମଭକ୍ତିର ମୂର୍ଚ୍ଛନା ସୃଷ୍ଟି କରିଥିଲା । ତାର ଭିତ୍ତିଭୂମି ଉପରେ ଏମାନେ ଏହାକୁ ସୁଦୃଢ଼ କଲେ ।

ଷୋଡ଼ଶ-ସପ୍ତଦଶ ଶତାବ୍ଦୀବେଳକୁ ଓଡ଼ିଆ କାବ୍ୟସାହିତ୍ୟର ଉନ୍ମେଷ ଘଟିଥିଲା । ମଧ୍ୟଯୁଗର ବହୁତ କାବ୍ୟକାର ସଂସ୍କୃତ ସାହିତ୍ୟର ରସପୁଷ୍ଟ ଶକ୍ତିକଲା ଏବଂ ସାରଳା ଓ ପଞ୍ଚସଖାଙ୍କ ପୌରାଣିକ ଉପାଖ୍ୟାନକୁ ସମ୍ବଳ କରି କାବ୍ୟ ସୃଷ୍ଟିରେ ମନୋନିବେଶ କଲେ । ଫଳରେ ମହାଭାରତ ଓ ପୁରାଣ ଆଦିରୁ କ୍ଷୁଦ୍ର ଆଖ୍ୟାୟିକାମାନ ଗ୍ରହଣ କରି ବହୁ କାବ୍ୟ ଏହି ସମୟରେ ରଚିତ ହୋଇଥିଲା । ଏଥିରେ ଆପଣାର ଧର୍ମଚେତନା ସହିତ କବିମାନେ ଶାସ୍ତ୍ରୀୟ ଶୈଳୀରେ କାବ୍ୟର ଅଭିବ୍ୟକ୍ତି ଦେବାକୁ ଚେଷ୍ଟା କରିଥିଲେ । ସପ୍ତଦଶ ଶତାବ୍ଦୀ ବେଳକୁ କାଳ୍ପନିକ କାବ୍ୟ ସୃଷ୍ଟିର ପରମ୍ପରା ଭଞ୍ଜ ବଂଶର ସ୍ରଷ୍ଟାମାନଙ୍କଠାରୁ ଆରମ୍ଭ ହେଲା । ଉପେନ୍ଦ୍ର ଭଞ୍ଜଙ୍କ ଲେଖନୀରେ ଓଡ଼ିଆ କାବ୍ୟ ସାହିତ୍ୟ ସମୃଦ୍ଧ ହେଲା । ଏତିକିବେଳେ ଓଡ଼ିଆ ଭାଷା ଓ ସାହିତ୍ୟିକ ଅଭିବ୍ୟକ୍ତି ସଂସ୍କୃତାନୁରାଗୀ ହୋଇଉଠିଥିଲା । ସାରଳା ମହାଭାରତର ଭାଷା ଯେପରି ଓଡ଼ିଆର ଆଦିମ ଉଚ୍ଚାରଣରୂପେ ପ୍ରକାଶ ପାଇ ଜଗନ୍ନାଥ ଦାସଙ୍କ ଭାଗବତରେ ପରିପକ୍ୱତା ଲାଭ କରିଥିଲା, ସେହି ଗତିବେଗ ଉପେନ୍ଦ୍ରଙ୍କଠାରେ ଭିନ୍ନଶକ୍ତି ଲାଭ କଲା । କିନ୍ତୁ ଦୀନକୃଷ୍ଣ, କବିସୂର୍ଯ୍ୟ, ଗୋପାଳକୃଷ୍ଣ, ସଦାନନ୍ଦ ଓ ବନମାଳୀ ଇତ୍ୟାଦିଙ୍କଠାରେ ଏହା ରସ-ଘନ ହୋଇ ପ୍ରକାଶ ପାଇଥିଲା । ଅଭିମନ୍ୟୁଙ୍କ ସୃଷ୍ଟିରେ ଭାଷାଭିବ୍ୟକ୍ତି ବହୁ ପରିମାଣରେ ଆଲଂକାରିକ ହୋଇପଡ଼ିଥିଲା ।

ଦ୍ରବ୍ୟ, ଅଦ୍ରବ୍ୟ ଗ୍ରଷାର ନିବନ୍ଧନ ଓ ଗତାନୁଗତିକ ସେତେବେଳେ ଗୁରୁତ୍ୱ ଆରୋପ କରାଯାଉଥିଲା । ତାହା ଥିଲା ଏକ ବନ୍ଧନର ଯୁଗ । କାବ୍ୟାମ୍ବରର ବହୁମୁଖୀନତା ପ୍ରତି ସଚେତନତା କବିମାନଙ୍କଠାରେ ଆଦୌ ଦେଖା ଯାଉ ନ ଥିଲା । ତେଣୁ ମଧ୍ୟଯୁଗର କାବ୍ୟ ସାହିତ୍ୟ କେତୋଟି ଗତାନୁଗତିକ ଆଦର୍ଶକୁ ନେଇ ପରିପୁଷ୍ଟି ଲାଭ କରିଥିଲା ।

ପ୍ରେମ ଓ ଭକ୍ତିର ରସଧାରା ଉଚ୍ଛଳ ହୋଇ ପ୍ରବାହିତ ହୋଇଥିଲା ଏହି ଯୁଗରେ । ପ୍ରଚୁର ଉପାଦାନ ଥିଲେ ବି ମଧ୍ୟଯୁଗର କବି ବୈଚିତ୍ର୍ୟପୂର୍ଣ୍ଣ ବହିର୍ଜଗତର ରସ-ରୂପ ବେକ୍ଷଣ କରିବାକୁ ସମର୍ଥ ହୋଇ ନ ଥିଲା । ତା'ର ଦୃଷ୍ଟିରେ ନାରୀ ହୋଇଥିଲା ପରମ ପଦାର୍ଥ । ସ୍ୱର୍ଗ ଅପବର୍ଗରୁ ପରମ ସୁଖଦାୟୀ ବୋଧ ହେଉଥିଲା ରତି । ପ୍ରାଣ ବିସର୍ଜନ ଅପେକ୍ଷା ପ୍ରିୟା ବିସର୍ଜନ କଷ୍ଟକୁ ଅଧିକ ଯନ୍ତ୍ରଣାଦାୟକ ବୋଧ କରୁଥିଲା ପୁରୁଷ । ତେଣୁ କାବ୍ୟ-କବିତାରେ ରସପୂରିତ ପ୍ରଣୟାବେଗ ପ୍ରକାଶ ପାଉଥିଲା । ନାୟିକାପ୍ରଧାନ କାବ୍ୟ ରଚନା ହୋଇଥିଲା ସାଧାରଣ ଶୈଳୀ, ଶୃଙ୍ଗାର ଥିଲା ଅଙ୍ଗୀ ରସ । ବିଷୟବସ୍ତୁ ଓ କାବ୍ୟ ଗଠନ କଳାରେ ଏକ ପାରଂପରିକ ଫର୍ମୁଲା ଅନୁସୃତ ହେଉଥିଲା । ମଧ୍ୟଯୁଗର ଧର୍ମ ଭିତ୍ତିକ କାବ୍ୟ-ସାହିତ୍ୟ ଯେଉଁ ଭକ୍ତି-ଚେତନାକୁ ଜନ୍ମ ଦେଇଥିଲା, ସେଥିରେ ପ୍ରେମ ଅନ୍ତର୍ଲୀନ ହୋଇ ରହିଥିଲା । ପ୍ରେମଭକ୍ତି ଥିଲା ସାର ଭକ୍ତି । ପ୍ରୀତି ଥିଲା ଭକ୍ତିର ମାଧ୍ୟମ । ଦେହ ହୋଇଥିଲା ପ୍ରେମର ସାଧନ ଭୂମି । ତେଣୁ ଦେହର ଅନ୍ତରଗରେ ଶ୍ରୀକୃଷ୍ଣଙ୍କ ପ୍ରେୟସୀମାନଙ୍କଠାରେ ବିଭ୍ରାନ୍ତି ଓ ବିରହକାତରତା ପ୍ରକାଶ ପାଉଥିଲା ।

ଓଡ଼ିଆ କାବ୍ୟ-ସାହିତ୍ୟର ବିକାଶକ୍ରମରେ ମଧ୍ୟଯୁଗ ପୁରାଣ-ମାନଙ୍କରୁ କଥାବସ୍ତୁ, ରସ ଓ ଅଭିବ୍ୟକ୍ତି ଧାରା, ସଂସ୍କୃତ ସାହିତ୍ୟରୁ ଆଳଂକାରିକ ରୀତି-ନିୟମ, କଳ୍ପନା ଓ କାବ୍ୟକଳା; ଲୋକକଥା ଓ ଲୋକଗୀତରୁ ଆତ୍ମିକ ଅନୁଭୂତି ଓ ପ୍ରାଣ ପରମ ଉଚ୍ଛ୍ୱାସ; ବିଭିନ୍ନ ଧର୍ମଧାରାରୁ ପ୍ରେମଭକ୍ତି ଓ ତତ୍ତ୍ୱଦର୍ଶନର ପ୍ରେରଣାପୁଞ୍ଜି ଲାଭ କରି ପରିପୁଷ୍ଟ ହୋଇଥିଲା । ଊନବିଂଶ ଶତାବ୍ଦୀର ଆଦ୍ୟ ପାଦ ପର୍ଯ୍ୟନ୍ତ ଏହି ଧାରା ଜୀବିତ ଥିଲା ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ବେଳକୁ ପାଶ୍ଚାତ୍ୟ ଶିକ୍ଷା, ସଂସ୍କୃତି ଓ ସାହିତ୍ୟ ଚେତନାରେ ଅନୁପ୍ରାଣିତ ହୋଇ ଓଡ଼ିଆ କବି କୁଳ କାବ୍ୟ-କବିତାର ଏକ ବୈପ୍ଳବିକ ପରିବର୍ତ୍ତନ ଆଣିଥିଲେ । ବିଦେଶୀ ଭାବଧାରାଦ୍ୱାରା ଉଦ୍‌ବୁଦ୍ଧ ହୋଇଥିବା ହେତୁ ଊନବିଂଶ ଶତାବ୍ଦୀର କାବ୍ୟକାରଗଣ ଓଡ଼ିଆ ସାହିତ୍ୟରେ 'ରେନେସାଁ'ର ସୂତ୍ରପାତ ଘଟାଇ ପାରିଥିଲେ ।

ରାଧାନାଥଙ୍କ ନେତୃତ୍ୱରେ ଓଡ଼ିଆ କାବ୍ୟ ସାହିତ୍ୟ ନୂତନତାର ଦିଗନ୍ତ ଉନ୍ମୋଚନ କଲା । ପ୍ରାଚ୍ୟ-ପାଶ୍ଚାତ୍ୟ ଚିନ୍ତାଧାରାର କାବ୍ୟିକ ସମନ୍ୱୟ ବ୍ରିଟିଶ ଶାସନକାଳରେ ସାଧିତ ହେଲା । କାବ୍ୟ ସ୍ରଷ୍ଟାଗଣ ପାଶ୍ଚାତ୍ୟ-ସାହିତ୍ୟକ ବିଭବଦ୍ୱାରା ଓଡ଼ିଆ ସାହିତ୍ୟର ଅଂଗ ମଣ୍ଡନ କରିବାରେ ଆଗ୍ରହ ପ୍ରକାଶ କଲେ । ଏହି କାଳରେ ସାହିତ୍ୟ-ଜଗତର ଏହି ବୈପ୍ଳବିକ ପରିବର୍ତ୍ତନପ୍ରତି କେତେକ ବୀତସ୍ପୃହ ହୋଇ ପଡ଼ିଥିଲେ । ତେଣୁ ଉପେନ୍ଦ୍ର-ରାଧାନାଥଙ୍କର ସାହିତ୍ୟପ୍ରୀତିକୁ କେନ୍ଦ୍ରକରି ଏକ ପ୍ରକାର 'କବି-କନ୍ଦଳ' ତୀବ୍ର ହୋଇଉଠିଥିଲା । ତଥାପି ଓଡ଼ିଆ ଚେତନାର ରକ୍ଷଣଶୀଳତାକୁ ଅତିକ୍ରମ କରି ପ୍ରଗତିର ନୂତନ ସୋପାନରେ ଅବତୀର୍ଣ୍ଣ ହୋଇଥିଲେ ସେ କାଳର ଓଡ଼ିଆ

କାବ୍ୟକାରଗଣ। କାବ୍ୟ-କବିତାରେ ଆତ୍ମିକ ଓ ଆଂଗିକ ବିପ୍ଳବ ଦେଖା ଦେଲା । ଇଂରେଜୀ ସାହିତ୍ୟର ରୋମାଣ୍ଟିକ ଭାବଧାରାର ସ୍ୱଚ୍ଛନ୍ଦ ପ୍ରବାହରେ ଊନବିଂଶ ଶତକର କାବ୍ୟ-ସାହିତ୍ୟ ରସସିକ୍ତ ହେଲା । ପ୍ରକୃତି ଓ ମାନବ-ଜୀବନ ପ୍ରତି ଆତ୍ମିକ ତଥା ମାର୍ମିକ ଦୃଷ୍ଟିଭଂଗୀ ପ୍ରକାଶ ପାଇଲା । ଇତିହାସ ସଚେତନତା ବୃଦ୍ଧି ପାଇଲା। ଜାତୀୟତାବୋଧ କବି ଚିତ୍ତରେ ଅଂଗୀଭୂତ ହେଲା । ନୂତନ ଶୈଳୀସର୍ବସ୍ୱ, ଆତ୍ମକେନ୍ଦ୍ରିକ, ବ୍ୟକ୍ତି-ଉଚ୍ଛ୍ୱାସପୂରିତ ଗୀତିକବିତା ସୃଷ୍ଟି ହେଲା । ସାମାଜିକ ବ୍ୟବସ୍ଥାରେ ସୁରୁଚି ଓ ସୁନୀତିର ସଂସ୍ଥାପନ ପାଇଁ ଓ ବ୍ୟକ୍ତି ଜୀବନକୁ ସଂଗଠିତ କରିବାପାଇଁ କବି ଓ ବୁଦ୍ଧିଜୀବିଗଣ ଯତ୍ନଶୀଳ ହେଲେ । ବ୍ୟଂଗ କବିତାର ଶୈଳୀ ପ୍ରବର୍ତ୍ତିତ ହେଲା । କାବ୍ୟ କଳାରେ 'ଟ୍ରାଜେଡ଼ି' ରସଗର୍ଭୀ ମର୍ଯ୍ୟାଦା ଲାଭ କଲା । ପତ୍ରଲେଖ ବା ଚିଠାଉସାହିତ୍ୟ (Epistle) ଏକ ସ୍ୱତନ୍ତ୍ର ଭୂମିକା ଲାଭକଲା ।

ସୌନ୍ଦର୍ଯ୍ୟ ପ୍ରତି ତୃଷ୍ଣା, ସତ୍ୟ ଓ ଶିବର ସମବାୟରେ ସୌନ୍ଦର୍ଯ୍ୟର ବୃଦ୍ଧି ପାଇଁ ବ୍ୟାକୁଳତା କବିପ୍ରାଣକୁ ଭାବମଥିତ କଲା । ଛଂଦ ପ୍ରୟୋଗ କ୍ଷେତ୍ରରେ ନୂତନତାର ପ୍ରବେଶ ଘଟିଲା । ଅମିତ୍ରାକ୍ଷର ଛଂଦ ଓ ଉପଧା ମିଳନ ନୂଆ ଆଂଗିକ ହିସାବରେ କାବ୍ୟରେ ପ୍ରଯୁକ୍ତ ହେଲା । ବିଂଶ ଶତକର ଦ୍ୱିତୀୟ ଦଶକ ବେଳକୁ ଏହି ଆଧୁନିକ ଧାରା ସତ୍ୟବାଦୀର କାବ୍ୟ-ସାଧକମାନଂକ ସୃଷ୍ଟିରେ ପରିବର୍ତ୍ତିତ ସହ ପରିପକ୍ୱତା ଲାଭ କରିଥିଲା । ଇତିହାସର ସତ୍ୟତା ପ୍ରତି ଆନୁଗତ୍ୟ, ଏକାଂତ ଜାତୀୟତାବୋଧ ପ୍ରତି ପ୍ରଗାଢ଼ ଅନୁରକ୍ତି ଏବଂ ସଂସ୍କୃତିପ୍ରାଣତା ଓ ଜୀବନଧର୍ମିତା ପ୍ରତି ନିଷ୍ଠାପୂର୍ଣ୍ଣ ଅଭିପ୍ରାୟ ପ୍ରକାଶ ପାଇଲା । ଯୁଦ୍ଧୋତ୍ତର କାଳରେ ଓଡ଼ିଆ କାବ୍ୟ ସାହିତ୍ୟ

କ୍ଷେତ୍ରକୁ ବିଶ୍ୱ ବିପ୍ଳବର ବିଭିନ୍ନ ବାର୍ତ୍ତା, ମାର୍କସ, ଫ୍ରଏଡ୍ ଇତ୍ୟାଦି ବିଭିନ୍ନ ଚିନ୍ତାଧାରାଙ୍କର ଦର୍ଶନର ପ୍ରଭାବ ସଂକ୍ରମିତ ହୋଇ ଆସିଲା । ବିଶ୍ୱକବି ରବୀନ୍ଦ୍ରନାଥଙ୍କର ପ୍ରଭାବ ବିଶ୍ୱର ବିଭିନ୍ନ ସାହିତ୍ୟିକଙ୍କୁ ପ୍ରଭାବିତ କଲାପରି ଓଡ଼ିଆ ସାହିତ୍ୟର ସବୁଜ କାବ୍ୟକାରମାନଙ୍କୁ ମଧ୍ୟ ପ୍ରଭାବିତ କରିଥିଲା । କିନ୍ତୁ ସେମାନଙ୍କଠାରେ ନୂତନ କବିତାର ଯେଉଁ 'ଯୁଗବାଣୀ' ଝଙ୍କୃତ ହେଲା, ତାହା ସମସାମୟିକ; କିନ୍ତୁ ବହିଃକନିଷ୍ଠ ପ୍ରଗତିବାଦୀ ସ୍ରଷ୍ଟା କବିମାନଙ୍କପାଇଁ କ୍ଷେତ୍ର ପ୍ରସ୍ତୁତ କରିଥିଲା !

'ପାଣ୍ଡୁଲିପି' ସେଇ ବିପ୍ଳବ ଓ ନୂତନତାର ବାର୍ତ୍ତାକୁ ପ୍ରକାଶ କରି ଯେଉଁ ନବୀନ ଧାରାର ସୂଚନା ଦେଲା, ତାହା କ୍ରମଶଃ ରଙ୍ଗ ରୂପ ବଦଳାଇ ସାଂପ୍ରତିକ କାବ୍ୟ-ଚେତନାରେ ମୂର୍ତ୍ତିମନ୍ତ ହୋଇଉଠିଛି । ସାଂପ୍ରତିକ କାବ୍ୟ-ସାଧନା; ବିଶ୍ୱ-ବିଭୂତି ଓ ବ୍ୟକ୍ତି ମନସ୍ତତ୍ତ୍ୱକୁ ପ୍ରଜ୍ଞାର ନିର୍ମାଣଶାଳାରେ ସିଦ୍ଧ କରି ସମୃଦ୍ଧ ହେବାରେ ଲାଗିଛି ।

ଅତ୍ୟାଧୁନିକ ତରୁଣ ସାରସ୍ୱତ ସାଧକମାନଙ୍କର ଭୂମିକା ଓଡ଼ିଆ କାବ୍ୟ-କବିତା କ୍ଷେତ୍ରରେ ମଧ୍ୟ ଅବିସ୍ମରଣୀୟ । ସେମାନଙ୍କର ସୃଜନଶୀଳ ଆତ୍ମବିଭୋରତାକୁ ଅନୁଧ୍ୟାନ କଲେ ସ୍ପଷ୍ଟ ଲକ୍ଷ୍ୟ କରିହେବ ଯେ, ସେଠି ବ୍ୟକ୍ତି ମନସ୍ତତ୍ତ୍ୱ ସେତିକି ଉଗ୍ର, ବିଶ୍ୱ ପରୀକ୍ଷାଗାରର ଶବ୍ଦ ସରଂଜାମ ସେତିକି ପ୍ରଚଣ୍ଡ ଏବଂ ଘାତକ ଝଡ଼-ଝଙ୍କାର କୁଆର ସେତିକି ପ୍ରବଳ । ସେମାନଙ୍କ ଭିତରୁ କାହାରି ଯୁଗୀୟ ନିଶା ବା ମୋହଚିତ୍ତରେ ଅମୃତକାରେ ଝୁଙ୍କ୍ ନାହିଁ; ବରଂ ସେମାନେ ପ୍ରତ୍ୟେକ ଏକ ଏକ ସ୍ୱୟଂସମ୍ପୂର୍ଣ୍ଣ ବୃତ୍ତ ବୋଲି ପ୍ରମାଣ କରିବାରେ ପ୍ରୟାସୀ ।

ଅମ କାବ୍ୟ-ପ୍ରବାହର ଆତ୍ମବାଣୀ ଉକ୍ତ ଗ୍ରଂଥରେ ସଂଯୋଜିତ ପ୍ରତିଟି କବିତା ବହନ କରିଛି ବୋଲି ଆମର ଆଶା । କାବ୍ୟ-କବିତାର ଐତିହ୍ୟ ଓ ବର୍ତ୍ତମାନଂକୁ ଏକତ୍ର ଉପଲବ୍ଧି କରିବାର ନିକଟତମ ସୁଯୋଗ କାବ୍ୟାମୋଦୀଙ୍କୁ ପ୍ରଦାନ କରିବାର ସାଧୁ ଅଭିଲାଷରେ ଏପରି ଏକ ଗ୍ରଂଥର ପରିକଳ୍ପନା କରାଯାଇଛି ।

---

# ସୂଚୀପତ୍ର

# ଶବର-ଶବରୀ ପ୍ରେମଚର୍ଯ୍ୟା

ଶବରୀପା



( ରାଗ-ବାଲଡ୍ଡୀ )

ଉଁଚ୍ଚ ଉଁଚ୍ଚ ପାବତ ତହିଁ ବସଇ ସବରୀ ବାଲୀ ।
ମୋରଙ୍ଗୀ ପୀଚ୍ଛ ପରହିଣ ସବରୀ ଗିବତ ଗୁଞ୍ଜରୀମାଳୀ ।୧।

ଉମତ ସବରୋ ପାଗଲ ସବରୋ ମାକର ଗୁଲୀ ଗୁହାଡ଼ୀ ତୋହୋର ।
ଣିଅ ଘରଣୀ ନାମେ ସହଜ ସୁନ୍ଦରୀ । (ଧ୍ରୁ)
ନାନା ତରୁବର ମୌଲିଲରେ ଗଅଣତ ଲଗେଲୀ ଡାଲୀ ।
ଏକେଲୀ ସବରୀ ଏ ବଣ ହିଣ୍ଡଇ କର୍ଣ୍ଣ କୁଣ୍ଡଳ ବଜ୍ରଧାରୀ ।୨। (ଧ୍ରୁବ)

ତିଅ ଧାଉ ଖାଟ ପାଡ଼ିଲା ସବରୋ ମହାସୁଖେ ସେଜ ଛାଇଲୀ ।
ସବରୋ ଭୁଜଙ୍ଗ ନୈରାମଣୀ ଦାରୀ ପେମ୍ହ ରାତି ପୋହାଇଲୀ ।୩। (ଧ୍ରୁବ)

ହିଅ ତାଁବୋଲା ମହାସୁହେ କାପୁର ଖାଇ ।
ସୁନ ନୈରାମଣି କଣ୍ଠେ ଲଇଅ ମହାସୁହେ ରାତି ପୋହାଇ ।୪। (ଧ୍ରୁ)

ଗୁରୁବାକ୍ ପୁଞ୍ଛଆ ବିନ୍ଧ ନିଅମଣ ବାଣେ
ଏକେ ଶର ସନ୍ଧାନେ ବିନ୍ଧହ ବିନ୍ଧହ ପରମଣି ବାଣେ ।୫। (ଧ୍ରୁ)

ଉମତ ସବରୋ ଗରୁଆ ରୋଷେ
ଗିରିବର ସିହର ସନ୍ଧି ପଇସନ୍ତେ ସବରୋ ଲୋଡ଼ିବ କଇସେ ।୬।

---

# ରୁଦ୍ର ସୁଧାନିଧି

ନାରାୟଣାନନ୍ଦ ଅବଧୂତ ସ୍ୱାମୀ



ସେ କାମଦେବ ମୋହିନୀ କନ୍ୟା ସଙ୍ଗତରେ ଥାଇ
ସହଚର ବସନ୍ତ ଥିବ ସଖାଯୁକ୍ତ ହୋଇ
ପୁଷ୍ପ ଧନୁ ଧର ତୋହରେ ତାହାର ସିଦ୍ଧି ଦେବ କାର୍ଯ୍ୟ
କାମ ବ୍ରହ୍ମାର ପ୍ରତିଜ୍ଞା ଦେଖି ଜାଣିମା ନା ଅଜ ।୧।

ସେ ଚଇତନ ସ୍ୱରୂପୀ ଈଶ୍ୱର ଆଜ୍ଞା ପାଇ
ଆତ୍ମାଶକ୍ତି ପାଶମୁକ୍ତ ପ୍ରାଣୀମାନଙ୍କ ମନକୁ ପୁନରପି
ଅନଙ୍ଗପାଶେ ଆକର୍ଷିବାକୁ;
ଅତ୍ୟନ୍ତ ହରଷ ହୋଇଲା ।
ସେ ସଚରାଚର ମୋହିନୀ କନ୍ୟାଏ ଜନ୍ମ କଲା ।୨।

ଆପଣା ମନରୁ, କେବଳ ମୁହୂର୍ତ୍ତି ମାତ୍ର ଧ୍ୟାନ ରହି ।୩।

ଆହା ବାବୁ କନ୍ୟା ସେ, ଋତେସ ଜଗତ ମୋହିଲା
ପୃଥିବୀ ଶୋହିଲା, ପ୍ରାଣୀମାନଙ୍କର ଧଇର୍ଯ୍ୟ ଉଡ଼ିଲା ।
ଅନଙ୍ଗ ଅପ୍ସୋନିଧି କ ଆସି କପିଳାସ କନ୍ଦର ଯାକେ ବେଢିଲା ।୪।

ତାହାର ଧନ୍ୟ ଧନ୍ୟ, କି ଭୂମିଗତ ସ୍ତ୍ରିତ ?
କି ମନ୍ମଥ ରଜାର  କୋଦଣ୍ଡ ଭ୍ରାନ୍ତ !
କି ବଳ୍କଳର କାନ୍ତ ।
କି ବ୍ରହ୍ମାଦ୍ଦି ଦେବଙ୍କୁ ମୋହନୀ ଫାଶୀ ? ।୫।

କି ବହ୍ନି ନିର୍ମାଣ କଳା ଲାବଣ୍ୟ ରାଶି ?
କି ଅନଙ୍ଗ ଅମୀୟ  ପୂର୍ଣ୍ଣ  କଳସୀ ?
କି ଯୋଗୀଜନ ମନ ମୀନ ବଡ଼ଶୀ  ?
କି କାମିନୀ କୁଳ ବିଳାସୀ ?
କି ମନସିଜ ମନଜ ବନ ଶଶୀ ?
କି ବ୍ରହ୍ମ ଜ୍ୟୋତି ନିର୍ମାଣ ମଣି ?
କି ବିବେକ ପ୍ରଦୀପକୁ ହତ ବତାସୀ ?
କି ଈଶ୍ୱର ମୋହିବାକୁ ଈକ୍ଷିତହାସୀ ?
କି ଦେଖି କାମଦେବ ହିଁ ହେଉଛୁ ଧଡ଼ସି ? ।୬।

ଆ ବାବୁ କନ୍ୟାର ସେ ବଦନ ପୂର୍ଣ୍ଣ ନିର୍ମଳ ଶରଦଚନ୍ଦ୍ର ଦ୍ରୁହାସନଫୁନ
ମୁଗ୍ଧଜନମାନଂକର ମନ ନୟନକୁ ଫାନ୍ଦ ଅଛୁ ଫାନ୍ଦ ?
ଜ୍ଞାନତରୁ ଉପାଡ଼ିବାକୁ ନୟନ ଗଙ୍ଗା ନଦୀର ତରଙ୍ଗ ।
ସ୍ନିଗ୍ଧ ବଦଗଧ ମଧୁର ଚଞ୍ଚଳ କଟାକ୍ଷରେ କୋଟି କୋଟି କାମ ଆସି
ହୋଇଅଛୁ ସଙ୍ଗ ।୭।

ନିର୍ବାଣ ମୁକ୍ତ ସୁଦ୍ଧ ପାରଇ ତାହାର ମୁଖ କମଳ ପେଷିଲେ ।
ତୃଷ୍ଣାପ୍ନା ଅବସ୍ଥା ହୋଇ ପାରଇ ତାହାର ସ୍ତନଶଙ୍କର ଦେଖିଲେ ।

ବିଧାତା ଦେଖିଲେ ଜଡ଼ଭାବେ କରିବ ପ୍ରଳାପ ।
ମନ୍ମଥ ରତି ସଙ୍ଗ ଗୁଡ଼ିବାକୁ ନଷ୍ଟେ କରୁଅଛୁ ସଂକଳ୍ପ ।୮।

ଚନ୍ଦ୍ର ଦରଶନ ମାସକେ କରଣେ ଛୁଇଲ ଯନ୍ତ୍ରଁ
କଷ୍ଟେ କଷ୍ଟେ ପ୍ରାଣ ରଖିଅଛୁ ଚନ୍ଦ୍ରଁ ।
ରୋହିଣୀର ଅଙ୍ଗ ସଙ୍ଗ ବରଙ୍ଗ ପାଇଲା
ସ୍ପର୍ଶନ କରିବା ମାସକେ ନିମଗ୍ନ ହୋଇ ଜଡ଼ ଆତ୍ମା ଗଗନେ ଉଇଁଲା ।
ଭୋଗ କରି ନ ପାରି ସେ ଠି ବାଧକ
କଳଙ୍କ ବୋଲି ତାହା ବୋଲନ୍ତି ଅଦ୍ୟାପି ।
ଅଲେଖ ଜ୍ଞାନ ବୁଦ୍ଧି ମୋହିବାକୁ ସେ ହୋଇଅଛୁ ଜନ୍ମ
ବୃହସ୍ପତି ଦେଖିଲେ ହେବେ ମଦନେ ବିଭ୍ରମ ।୯।

---

# ମହାଯାତ୍ରା

ସାରଳା ଦାସ



ଯୁଧିଷ୍ଠିର ବୋଲନ୍ତି ତୁ ଶୁଣ ବୃକୋଦର ।
ନଦୀ ପାର ହୋଇ ଯିବା କେମନ୍ତ ପ୍ରକାର ॥
ସ୍ୱାମୀଙ୍କ ଆଜ୍ଞାରେ ବୃକୋଦର ହେଲା ପାର ।
ସେ ସମୟେ କେ ଡାକଇ ରେ-ରେକାର କରି ॥
ତାହା ଶୁଣି ଯୁଧିଷ୍ଠିର କାତର ହୋଇଲେ ।
ବୃକୋଦରେ ଡାକ ଅର୍ଜୁନଙ୍କୁ ଆଜ୍ଞା ଦେଲେ ॥
ଅର୍ଜୁନ ଡାକିଲେ ଦେବ ଆସ ହେ ବାହୁଡ଼ି ।
ନ ଆସିଣ ଭୀମସେନ ଦେଲା ଏକ ରଡ଼ି ॥
ପୁଣି କେ ଡାକଇ ଉଚ୍ଚେ ଆରେ ରେ ପାଣ୍ଡବେ ।
ଯୁଧିଷ୍ଠିର ଅର୍ଜୁନ ନକୁଳ ସହଦେବେ ॥
ନଯିବ ବୁଲାଇ କହେ ତୁମ୍ଭେମାନେ କେ ରେ ?
ଜାଣିବା ତୁମ୍ଭର ବଳ ଏଣିକି ଆସ ରେ ॥
ତହୁଁ ସହଦେବେ ପୁଚ୍ଛା କଲେ ଯୁଧିଷ୍ଠିର ।
କେବଣ ବୃତ୍ତାନ୍ତ ଏହା କହ ହେ ସତ୍ୱର ॥
ତାହା ଶୁଣି ସହଦେବ ଦିଅଇ ଉତ୍ତର ।
ଆହେ ପ୍ରଭୁ ଯୁଧିଷ୍ଠିର ଶୁଣ ମୋ ଉତ୍ତର ॥
ସତ୍ୟ ଯୁଗେ ମାନଧାତା ଯଜ୍ଞ ଏଥି କଲେ ।
ମହୀମଣ୍ଡଳର ରାଜା ସବୁ ନିମନ୍ତ୍ରିଲେ ॥

ଏହି ସ୍ଥାନେ ଋଷିଗଣେ ଯଜ୍ଞ ଡକାଇଲେ ।
ଅମୋକ୍ଷ ଏ ଭୂମି ଜାଣି କେହି ନ ପଶିଲେ ॥
ମାନ୍ୟ ଗଉରବ ନାହିଁ ସବୁ ଏକାକାର ।
ଦ୍ୱିଜ ଚଣ୍ଡାଳ ଯେ ଏକ ନୁହଇ ଅନ୍ତର ॥
ଭୋଜନ କରିଲେ ଦେବ ନୁହଇ ଅଇଁଠା ।
ମଦ୍ୟ ମାଂସ ଏକଥରେ କରନ୍ତି ଯେ ଲଣ୍ଠା ॥
ଅନୁକ୍ଷଣେ ଏଠା-ବାସୀ ରମଣ କରନ୍ତି ।
କେଉଁଥିରେ ସେମାନଙ୍କ ନ ଥାଇ ଯେ ଭ୍ରାନ୍ତି ॥
ସେହି ହେତୁ ଏ ସ୍ଥାନରେ ଯାଗ ଯେ ନ ହେଲା ।
ଅମୋକ୍ଷ ହୋଇଣ ଏହି ସ୍ଥାନ ଯେ ରହିଲା ॥
ତାହା ଶୁଣି ଯୁଧିଷ୍ଠିର ବୋଲନ୍ତି ଏ ବାଣୀ ।
ଏହି ସ୍ଥାନେ କେଉଁପରି ଯିବା ଆମ୍ଭେ ପୁଣି ॥
ସେହି ସ୍ଥାନେ ଗଲେ ନିଶ୍ଚେ ହେବ ମହାଦୋଷ ।
ଏହା କହି ଡାକିଲେ ସେ ଭୀମ ଫେରିଆସ ॥
ଶୁଣ ଫୁଲାଇଣ ଭୀମ ବୁଲାଏ ଲଉଡ଼ ।
ଆସ ତୁମ୍ଭେ ତାହାକୁ ମୁଁ ମାରିବ କଉଡ଼ ॥
ତହୁଁ ହସି ଯୁଧିଷ୍ଠିର କହନ୍ତି ବଚନ ।
ଲେଉଟି ଆସିବ କେଉଁପରି ଭୀମସେନ ॥
ସହଦେବ ଅର୍ଜୁନ ହେ ଯାଅ ଏହିକ୍ଷଣି ।
ଗାଢ଼େ ଧରି ଭୀମକୁ ଯେ ଘେନି ଆସ ପୁଣି ॥
ତହୁଁ ସହଦେବ ପାର୍ଥ ଗଲେ ଧାଇ ବେନି ।
କୋଳକରି ଭୀମକୁ ସେ ଅଇଲେକ ଘେନି ॥
ଭୀମସେନ ବୋଲେ ଦେବ ଏ ସ୍ଥାନେ ନ ରହି ।
ଏହା ପାରିହେଲେ ପିତା ପୁନ ଦେଖା କାହିଁ ॥

ଦେବ ! କଥା ଛାଣି ନ ଶୁଣନ୍ତି ଶାସ୍ତ୍ରବାଠ ।
ରନ୍ଧାଶାଳେ ଭୁଞ୍ଜିଲେ ନ ନଅନ୍ତି ଉଚ୍ଛିଷ୍ଟ ॥
ଗୋ ବ୍ରାହ୍ମଣ ମାରନ୍ତି ସେ ନ ଜାଣନ୍ତି ହତ୍ୟା ।
ନ ଜାଣନ୍ତି ତହିଁ ଦେବ ! ହରି-ହର କଥା ॥
ଏହି ନଦୀ ପାରିହୋଇ ନ ଗମନ୍ତି ଜନ୍ତୁ ।
ଶ୍ରବଣରେ ହସ୍ତ ଦେଇ ଏଥୁ ବାହୁଡ଼ନ୍ତୁ ॥
ତହୁଁ ସର୍ବେ ଫେରିଆସି ଏକାମର ବନେ ।
ଭୂତବାସ ଦକ୍ଷିଣେ ରହିଲେ ଏକଦିନେ ॥
ଭୀମସେନ ଅନ୍ନପୂର୍ଣ୍ଣା କଲି ଯେ ରନ୍ଧନ ।
ବିନ୍ଦୁହ୍ରଦେ ସ୍ନାନ ସାରି କଲେ ତା ଭୋଜନ ॥
ଚିତ୍ରୋତ୍ପଳା ପାରି ହୋଇ ପାଞ୍ଚ ଭାଇ ଗଲେ ।
ପଶ୍ଚିମ ଦିଗକୁ ତହୁଁ ଯାତ୍ରା ଆରମ୍ଭିଲେ ॥
ବୈତରଣୀ ନଦୀତଟରେ ରହି ପାଞ୍ଚଭ୍ରାତ ।
ଚଳନ୍ତି ପାଣ୍ଡବେ ତହୁଁ ପଶ୍ଚିମ ମୁରତ ॥
ତହୁଁ ଯାଇଁ ପ୍ରୟାଗରେ ରହି ପାଞ୍ଚଜନ ।
ସାରିଲେ ଶ୍ରାଦ୍ଧ ଆଦି ଯେ ପିତୃକାର୍ଯ୍ୟମାନ ॥
ଯଥାବିଧି ସେହିଠାରେ ବାଲିପିଣ୍ଡ ଦେଲେ ।
ଶ୍ରୀଗଦାଧର ପ୍ରତ୍ୟକ୍ଷେ ପିତୃକାର୍ଯ୍ୟ କଲେ ॥
ଗୟାଶ୍ରାଦ୍ଧ ସେହିଠାରେ ସମସ୍ତଙ୍କୁ କଲେ ।
ପାପ ନାଶି ପିତୃଲୋକେ ସ୍ୱର୍ଗେ ବସାଇଲେ ॥
ତାହା ପରେ ପାଞ୍ଚଜଣ ସେହିଠାରୁ ଆସି ।
ପ୍ରବେଶ ହୋଇଲେ ଯାଇ କ୍ଷେତ୍ର ବାରାଣସୀ ॥
ମକରର କୃଷ୍ଣପକ୍ଷ ପ୍ରତିପଦ ଦିନ ।
ପୁଷ୍ୟା ନକ୍ଷତ୍ର ଯେ ଗୁରୁବାର ବିଦ୍ୟମାନ ॥

ବାଲବ ନାମେ କରଣ ବ୍ୟତିପାତ ଯୋଗ ।
ମକରର ସଙ୍କ୍ରମଣ ସେ ଦିନର ଭୋଗ ॥
ପାଣ୍ଡବେ ବିଜୟ କଲେ ଯାଇଁ କାଶୀପୁରେ ।
ଏକମାତ୍ର ଦ୍ରୌପଦୀ ଅଛନ୍ତି ସଙ୍ଗତରେ ॥
ମଣିକର୍ଣ୍ଣିକାରେ ତହୁଁ ସ୍ନାହାନ କରିଲେ ।
କାଶୀ ବିଶ୍ୱନାଥେ ଯାଇଁ ଦରଶନ କଲେ ॥
ବ୍ୟାସ ମାରକଣ୍ଡ ଋଷି ପ୍ରବେଶିଲେ ଆସି ।
ଦେଖିଣ ଧର୍ମନନ୍ଦନ ବଚନ ସମ୍ଭାଷି ॥
ମାର୍କଣ୍ଡ ବୋଇଲେ ତୁମ୍ଭେ ତପୀପଣେ ଆସି ।
ପ୍ରବେଶ ହୋଇଲ ଏହି କ୍ଷେତ୍ର ବାରାଣସୀ ॥
ରାଜ୍ୟଭାର କେଉଁଠାରେ କାହାକୁ ଯେ ଦେଲ ।
ପ୍ରଜାଙ୍କର କିଏ ଅବା କରିବଟି ଭଲ ॥
ଶୁଣି ଉତ୍ତର ଦିଅନ୍ତି ତାଙ୍କୁ ଧର୍ମସୁତ ।
ପାଣ୍ଡୁରାଜ୍ୟ ପାଉଅଛି ପୁତ୍ର ପରୀକ୍ଷିତ ॥
ଅନେକ ବନ୍ଧୁ ସୋଦର ଆମ୍ଭେ ବଧ କଲୁଁ ।
ପାପ ବିମୋଚନ ପାଇଁ ତୀର୍ଥକୁ ଅଇଲୁଁ ॥
ମାର୍କଣ୍ଡ ବୋଇଲେ ଯେବେ ହେଲ ତୀର୍ଥବାସୀ ।
ଶସ୍ତ୍ରଧାରୀ ହେଲେ ତହିଁ କିସ ଧର୍ମ ଅଛି ॥
ପଞ୍ଚଧନୁ ଦଶକୋଣ ଦେବ ଭଣ୍ଡାରର ।
ଭାରାଭର ହରଣେ ସେ ଅଟଇ ତୁମ୍ଭର ॥
ତୀର୍ଥ ସେବାପାଇଁ ପଥେ ହେବ ଅଣକତ ।
ଅସୁର ହରଣ ନେବେ ଦେବାସ୍ତ୍ର ସମସ୍ତ ॥
ବ୍ରହ୍ମା ପେଷିଦେଲେ ତେଣୁ ଦୁର୍ବାସା ଋଷିଙ୍କୁ ।
ଏ ଅସ୍ତ୍ରମାନଙ୍କୁ ନେବେ ସେ କପିଳାସକୁ ॥

ତାହା ଶୁଣି ଯୁଧିଷ୍ଠିର କଲେ ସନମତ ।
ଗୃଢ଼ଧନୁ ଆଠକୋଣ ଦେଲେ ମୁନିହସ୍ତ ॥
ଅର୍ଜୁନ ନ ଦେଲେ କୋଣ ଗାଣ୍ଡୀବ ଧନୁକୁ ।
କୋଇଲେ ହେ ମୁନି ଏହା ନ ଦେବ କାହାକୁ ॥
ଆତ୍ମାରୁ ଅଧିକ ସ୍ନେହ ଗାଣ୍ଡୀବକୁ ମୋର ।
ପ୍ରାଣ ଥାଉଁ ଏହାକୁ ମୁଁ ଦେବ କି ପ୍ରକାର ?
ଗୃଢ଼ଧନୁ ଅଷ୍ଟକୋଣ ଦୁର୍ବାସାଏ ନେଲେ ।
କୁବେର ଭଣ୍ଡାରେ ନେଇ ତାହାକୁ ଥୋଇଲେ ॥
ଅଗ୍ନି ଦେବତା କପଟେ ଦ୍ୱିଜରୂପ ହୋଇ ।
ପାଣ୍ଡବଙ୍କ ସନ୍ନିଧିରେ ପ୍ରବେଶିଲେ ଯାଇ ॥
ପ୍ରତିଗ୍ରହକୁ କରିଣ ମାଗିଲେ ଗାଣ୍ଡୀବ ।
ବୋଇଲେ ତୋ ତହିଁ ଥିଲେ ଧର୍ମ ନାଶ ଯିବ ॥
ଯୁଧିଷ୍ଠି ବୋଇଲେ ଅଣ୍ଡାକଲୁ ଅନ୍ୟ ପଥ ।
ଧନୁ ଅସ୍ତ୍ର ବହିବାର ନୁହଇ ଯୁକତ ॥
ଧନୁ ଅସ୍ତ୍ର ଯେବେ ବାବୁ ନ କରିବୁ ତ୍ୟକ୍ତ ।
ବାହୁଡ଼ ଯାଅ ଯା ଯହିଁ ଅଛୁ ପରୀକ୍ଷିତ ॥
ପାର୍ଥ ବୋଲେ ସ୍ୱାମି କାହୁଁ ଦେଖିବ ମୁଁ ତୋତେ ।
କୃଷ୍ଣ ଗଲେ ଅରଜୁନ ବର୍ତ୍ତିବ କେମନ୍ତେ ॥
ଆହେ ସ୍ୱାମି ଅଗ୍ନି ଯିନା ମୋତେ ଥିଲେ ଦେଇ ।
ତାଙ୍କ ବ୍ୟତିରେକେ ଆନେ ନ ଦେବଇଁ ମୁହିଁ ॥
ବ୍ରାହ୍ମଣ ବୋଇଲେ ତୁମ୍ଭେ ଦିଅ ମୋର ହସ୍ତେ ।
ଅଗ୍ନିଦେବତା ସନ୍ତୋଷ ହୋଇବେ ଯୁକତେ ॥
ଅର୍ଜୁନ ବୋଲେ ଅଗ୍ନିଙ୍କୁ ନ ଦେଖି ନୟନେ ।
ଏ ଧନୁ ତୁଣ କେମନ୍ତେ ଦେବଇଁ ବ୍ରାହ୍ମଣେ ॥

ବୋଲନ୍ତି ସେ ଦ୍ୱିଜବର ମୂର୍ତ୍ତି ବୈଶ୍ୱାନର ।
ଦଅ ତୁମ୍ଭେ ଧନୁ ତୂଣ ଏହୁ ମୋର କର ॥
ତକ୍ଷଣେ ଦ୍ୱିଜ ସେ ସ୍ଥାନେ ବକାଶିଲେ ରେଖା ।
ପଞ୍ଚପୁର ତାଳ ଉଚ୍ଚ ହୋଇଲାକ ଶିଖା ॥
ଅର୍ଜ୍ଜୁନ ଦେଖି ନୟନୁ ବହେ ଅଶ୍ରୁଜଳ ।
ପାଣ୍ଡବ ଧନୁ ତୂଣକୁ ଫିଙ୍ଗିଲେ ଅନଳ ॥
ସ୍ୱୀକୃତ ହୋଇଲା ତହିଁ ସେ ଶିଖା ପ୍ରଖର ।
ଗଗନକୁ ଗତି କଲେ ତହୁଁ ବୈଶ୍ୱାନର ॥
ଅନ୍ତରୀକ୍ଷରେ ଥାଇଣ ବୋଲନ୍ତି ବଚନ ।
ତୁ ହୋ ଏଥିକୁ ବିମନ ନୁହଁ ଫାଲଗୁନ ॥
ଭବ ନିବାରଣ ପାଇଁ ପୁଣ ହେଲେ ଜାତ ।
ପୁଣି ଏ ଧନୁ ତୋହର ହେବ ହସ୍ତଗତ ॥
ଏତେକ କହି ଆକାଶେ ଚଳିଲେ ଝଟତି ।
ଶୁଣିଣ ଅର୍ଜ୍ଜୁନ ତହୁଁ ହୋଇଲେ ତୃପତି ॥
ଆହେ ଜଗତର ନାଥ ଶୁଣ ମୋ ଗୁହାରି ।
ବ୍ରହ୍ମାଣ୍ଡ ଅର୍ଣ୍ଣବେ ଏବେ ବୁଡ଼ିଯାଏ ମରି ॥
ସଂସାର ମାୟା ଜଟିଳେ ସର୍ବଦା ମୁଁ ପଡ଼ି ।
ବିଷପାନ କଲି ତୁମ୍ଭ ନାମ ସୁଧା ଛାଡ଼ି ॥
ଆୟୁ-ସୂର୍ଯ୍ୟ କ୍ରମେ କ୍ରମେ ହେଉଅଛି ଅସ୍ତ ।
କରୁଁ ଅର୍ଜ୍ଜି ନ ପାରିଲି ତୁମ୍ଭ ନାମ ବିତ୍ତ ॥
ଆହେ ଶରଣରକ୍ଷଣ ନାଥ ଚଉବାହା ।
ସାରଳା ଦାସକୁ ଶେଷେ ହୋଇବାକ ସାହା ॥

---

# ରାମବିଭା

ଅର୍ଜ୍ଜୁନ ଦାସ



ପଚ୍ଚରନ୍ତି ପାଣ୍ଡବ ପଞ୍ଚନାନ ବଖାଣନ୍ତି ମାର୍କଣ୍ଡ ଋଷି ।
ଶ୍ରୀରାମଚରିତ ଏ ସୁଧାରସ ଏକ ମନେ ଶୁଣ ପାଣ୍ଡୁଶିଷି । ୧ ।
ଦଶରଥ ପଚ୍ଚରନ୍ତି ଜନକଙ୍କୁ ବିଭା କେବଣ ଦିନ ।
ଜାତକପତ୍ର ଦେଖ ବିଚାରିବା ଶୁଭ ଯୋଗେ ଅନୁକୂଳ ଦେଖ । ୨ ।
ବୋଲନ୍ତି ଗଉତମ କଉଶିକ ବୃହସ୍ପତି ବାର ପଞ୍ଚମୀ ।
ବିଭା ହୋଇବ ସେହି ଯାମିନୀ ସୀତାଙ୍କୁ ଶ୍ରୀରାମମଣି । ୩ ।
ଶୁଣିଣ ବଶିଷ୍ଠ ବିଚକ୍ଷଣ ଲଗ୍ନ ଯୋଜିଲେ ସେହି ଦିନ ।
ବାଲ୍ମୀକି ଗଉତମ କଉଶିକ ସବୁଙ୍କର ହୁଏ ଏକ ମନ । ୪ ।
ପ୍ରବେଶ ରଜନୀ ପହର ତିନି ଯେ ଯାହା ପୁରକୁ ଗଲେ ।
ମଣୋହି ସାରି ଜନକ ରାଜ୍ୟେ ପଲଙ୍କରେ ପହୁଡ଼ିଲେ । ୫ ।
ନିରନ୍ତରେ ଶଙ୍ଖଧ୍ୱନି ପୂରିଲା ମଙ୍ଗଳ ମଧୁର ଗୀତ ।
ଦିବସେ ବିରଞ୍ଚି ବାସବମୁଖ ଅନୁରାଗେ ଆକୁଳ ଚିତ୍ତ । ୬ ।
କମଳ ମୁକୁଳେ ମଧୁକରେ ପୀତ ପରାଗେ ଦିଶନ୍ତି ।
କାମିନୀ କୁଚ କୁଙ୍କୁମ ଭାବେ ବଲ୍ଲଭ ଲଭନ୍ତି । ୭ ।
କୋକିଳେ କୋକିଳା ରୋଳ କରନ୍ତି ଅରୁଣ କିରଣ ପ୍ରକାଶେ ।
ଦ୍ୱିଜବରେ ନିଜ କର୍ମ ସାରନ୍ତି ଦିନକର ହୋଇଲେ ଶେଷେ । ୮ ।
ଜନକ ନୃପତି ନରନାରୀ ମଣିମୟ ଅଳଙ୍କାର ଲଇ ।
ଦିବ୍ୟବେଶ ହୋଇଣ ନାରୀ ପାଣି ତୋଳିଲେ ସଜହୋଇ । ୯ ।

କାଞ୍ଚନ କନକ କଳସେ ଜଳ ସାଧୁକ ଶ୍ରୀଫଳ ଭରି ।
ହୁଳହୁଳି ଦେଇ ଗୀତ ଗାବନ୍ତି ବାଜଇ ଶଙ୍ଖ ମହୁରି । ୧୦ ।
ଗ୍ରାମୁଣ୍ଡିଆ ମନ୍ଦିରେ ମଣ୍ଡପେକ ନବରତ୍ନ କଟେମଣି ନବାଢ଼ି ।
ଇନ୍ଦ୍ର ଗୋବିନ୍ଦ ପାଟ ସିଂଆଇଣି ବେଦିକ ବେଢ଼ିଣି ପାଢ଼ି । ୧୧ ।
ଫୁଲ ଚାମର ଝର ମଣ୍ଡିଣି ତୋରଣ ମୁକୁତା ମାଳ ।
ଘରେ ଘରେ ସୁବର୍ଣ୍ଣ କଳଶ ବସେ ନେତ ପତାକା ଚଉଳ । ୧୨ ।
ଲକ୍ଷେକ ନୃପତି ବରଯାତ୍ରୀ ସଭୁଙ୍କୁ ହେଁ ରତ୍ନସିଂହାସନ ।
ଉପରେ ମଣିଗଣ ଖଞ୍ଜିଣି ମଣ୍ଡିଲେ ଚନ୍ଦ୍ରାତପମାନ । ୧୩ ।
ଜଙ୍ଗମ ମୂରତି ଧରିଣ ଦେବେ ଜନକପୁରେ ମିଳନ୍ତି ।
ଶ୍ରୀରାମ ଶ୍ରୀମୁଖ ଦରଶନେ ମାନସିକେ ପ୍ରଣାମ କରନ୍ତି । ୧୪ ।
ବାଜିଲା ଢୋଲ ଦମାଲୁ ଝମକ ନିଶାଣ ବାଣ ।
ଶ୍ରୀରାମ ପଟ୍ଟେ ବିଜେପୂ କରି ଆସନ୍ତି ଆପଣେ ଦଶରଥ ରାଣ ।୧୫।
ରଜନୀ ପାହିଲେ ଜନକପୁରେ ପ୍ରଭାତେ ଉଦେ ଅଂଶୁମାଳୀ ।
ଦଶରଥ ଆସ୍ଥାନେ ବିଜେ ବାଜଇ ବୀର କାହାଳି । ୧୬ ।
ସୀତାଙ୍କୁ ସୁବେଶ କରନ୍ତି ବିଭାର ବିଧି ଯେସନ ।
ମାଜଣା ସାରି ଶ୍ରୀଅଙ୍ଗ ପୋଛି ପିନ୍ଧାଇଲେ ଦେବାଙ୍ଗ ବସନ ।୧୭।
ଚନ୍ଦ୍ରସମ ଅଙ୍ଗେ ଲଗାଇଣ ମଳକୁଟିମାନ କଲେ ଦୂର ।
ହୁଳହୁଳି ଦେଇ ଗୀତ ଗାବନ୍ତି ଆନନ୍ଦେ ଜନକପୁର । ୧୮ ।
ବିବିଧ ସୁଗନ୍ଧ କୁସୁମ ଭରି କାମିନୀ କବରୀ ଖୋସନ୍ତି ।
ମହାଦେବ ଭସ୍ମରୁ ରତିପତି ସାଧୁକ ସଙ୍ଗତେ ଲୁଚନ୍ତି । ୧୯ ।
କସ୍ତୁରୀ ତିଳକ କବଳ ନ ସେ କଳାନିଧି ଉପମା ।
ମୁକୁତା ଜାଳି ଶିରେ ଖଞ୍ଜିଲେ ଅନ୍ତଃପୁର ବାମା । ୨୦ ।
କପାଳେ ଶୋଭଇ ସୁନ୍ଦର ଶଢା ହୀରା ମାନେ ଝଟକନ୍ତି ।
ମଧ୍ୟରେ ପଦ୍ମରାଗ ମାଣିକ୍ୟ ନବଗ୍ରହଙ୍କର ଜ୍ୟୋତି । ୨୧ ।

ନାସାରେ ଗଜମୋତି ଲୁଚେ ଲାବଣ୍ୟ ସୁଧାରସ ବିନ୍ଦୁ ।
ହୀରକ ପଟଳେ ପୁରନ୍ଦର କି ସେ ଉଦୟୁ କୁମାରୁ ଇନ୍ଦୁ । ୨୨ ।
କଣ୍ଠେ ଅମୂଲ୍ୟ ଚଡ଼କ ମହିମସ୍ଥ କରଣ ବିରାଜେ ।
ମୁନିମନ ବନ୍ଦୀ ଆସନ ସମ୍ପାଦିଲେ ମନମଥ ରାଜ୍ୟେ । ୨୩ ।
ଅବତଂସେ କମନୀୟ ବର ମରକତ ଅରବିନ୍ଦ ବେନି ।
ବିକଶିତ ମଦନ ଶର ହର ମୋହନ ଭୁବନ ଜିଣି । ୨୪ ।
କମ୍ବୁକଣ୍ଠେ ଲୁଚେ ଗଜମୋତି ଝରା କନକ କୁମ୍ଭ ବେନି ।
କମଳ ମୃଣାଳ ବେନି କରପଦ ନୟନ ସାୟକ ଜାଣି । ୨୫ ।

× × ×

କଟିତଟେ ଖଞ୍ଜିତ କଟିମେଖଳା ହୀରା ମାଣିକ୍ୟ ଶୋଭିତ ।
ନିତମ୍ବ ମଦନ ସିଂହାସନ ମୁକୁତା ଝରା ଲମ୍ବିତ । ୨୬ ।
ସୁରୁଚି ଚରଣେ ନୂପୁର ବେନି ସୁସ୍ବର ଧ୍ବନି କରନ୍ତି ।
ମନସିଜ ମଉଳ ମଣ୍ଡିବେ ବୋଲି ସବୁଙ୍କର ଆଗେ କହନ୍ତି ।୨୮ ।
ଶ୍ରୀରାମଙ୍କୁ ସୁବେଶ କରାବନ୍ତି ନୃପତିମାନଙ୍କ କୁମାରେ ।
ଚତୁସମ ଲଗାଇଣ କୁସୁମନ୍ତ ମଣ୍ଡନ୍ତି ଚୂଳରେ । ୨୯ ।
ଶ୍ୟାମଳ ସୁନ୍ଦର ଶ୍ରୀରାମର ଅଙ୍ଗ କର୍ପୂର ଚନ୍ଦନ ଘଷି ।
ବସନ୍ତ ପଟମା ପାଟେକ ପିନ୍ଧି ଦୟାନିଧି ରୂପ ପ୍ରକାଶି । ୩୦ ।
ବଦରୀକ ସମ କଣ୍ଠମାଳ ମାଣିକ୍ୟର ମଣି ନାୟକ ।
ଶ୍ରୀରାମର ହୃଦେ ଲମ୍ବାଇଲେ ଝଟକନ୍ତି ଏକକୁ ଆରେକ । ୩୧ ।
ବ୍ରହ୍ମାଣ୍ଡେ ଦୁର୍ଲ୍ଲଭ ବ୍ରହ୍ମଜାତି ହୀରା ତାରତର ଝଟକନ୍ତି ।
ଶ୍ରୀଭୃଗୁ ହୃଦୟ ପରରେ ମଣ୍ଡନ୍ତି ଯେ ଯାହା ତାବେ ଶୋଭନ୍ତି ।୩୨।
ନୀଳ ସୁନ୍ଦର ଶ୍ରୀଅଙ୍ଗ କୁଙ୍କୁମେ କମନୀୟ ଦିଶେ ।
ଉପିଲା ମାରଗ କି ସେ ପଞ୍ଚଦଶ କଣଦୃ ମିଶେ । ୩୩ ।

ନୃବେଶ ହୋଇଣ ରଘୁନନ୍ଦନ ବଭା ମଣ୍ଡପେ ବଜେ କର୍ ।
ହୁଳହୁଳ ସୁରପୁର ସୁନ୍ଦରୀ ବାଜଇ ଶଙ୍ଖ ମହୁରୀ । ୩୪ ।
ସକଳ ନୃପତି ବରଜାତି ବେଦକ ବେଢ଼ିଣ ବସନ୍ତି ।
ଶ୍ରୀରାମ ପ୍ରସନ୍ନ ବଦନ ଦେଖି ବକାରେ ଯୁବତୀ ହସନ୍ତି । ୩୫ ।
ଦଶରଥ ଜନକ ସକଳ ଋଷି ବରଣ ବଧାନ କରନ୍ତି ।
ସୀତାଙ୍କୁ ଘେନିଣ ସୀମନ୍ତିନୀ ବେଦ ଉପରେ ମିଳନ୍ତି । ୩୬ ।
ଲବଣ ଆଞ୍ଜୁଳ କରେ ଧରିଣ ଶ୍ରୀରାମ ମୁଖେ ଧରେ ଦୁକୂଳ ।
ସୁମୁଖୀ ସମୂହ ସାତ୍ତ୍ୱିକଭରେ ଦୃଢ଼ କଟିମେଖଳ ମୁକୁଳ । ୩୭ ।
ବୋଲନ୍ତି କେଉଁ ତପ ଆଚରଲେ ଶ୍ରୀରାମ ମୁଖକୁ ଚାହିଁ ।
ଏକକୁ ଆରେକ ବୁଝାବନ୍ତି ଅକାରଣେ ମର କମ୍ପାଇଁ । ୩୮ ।
ଗଗନଚନ୍ଦ୍ରକୁ ଜଳେ ଦେଖିଲେଣ ବୁଡ଼ିଲେ କି ହୋଇବ ପ୍ରାପତ ।
ସ୍ୱପନେ ନିଧି ପାଇଲେଣ ସେହୁ ଯେମନ୍ତେ ନୁହଇ ସତ । ୩୯ ।
ସୁର-ସୀମନ୍ତିନୀ ଶ୍ରୀରାମ ମୁଖ ଦେଖିବାକୁ ନୋହେ ଯୋଗ୍ୟ ।
ଦୁର୍ଲଭ ଓଷା ଫଳ ଯେହ୍ନ ଗୁଣ ମନେ ବୈକୁଣ୍ଠ ଭୋଗ । ୪୦ ।
ଶ୍ରୀରାମ କୋଟିଏ ମନସିଜରୂପ ବାସବ ଶିବ ସମ ନୋହେ ।
ଅକାରଣେ ଶରୀର ଦହିବ ସିନା ଦୁର୍ଲ୍ଲଭ ବଲ୍ଲଭ ମୋହେ । ୪୧ ।
କୁରଙ୍ଗୀନୟନୀ ସୀତାଙ୍କୁ ଘେନି ଅନ୍ତଃପୁରେଣ ପଶି ।
ଦରଶ ସାରସ ଜନକ ରାୟେ ବଭା ବେଭାରେ ବସି । ୪୨ ।
ବଶିଷ୍ଠ ବଚନ କହନ୍ତି ଦଶରଥଙ୍କୁ ଚାହିଁ ।
ବଇଦେହୀଙ୍କୁ ଅଶ୍ରାଅ ଲଗ୍ନ ନିକଟ ହୋଇ । ୪୩ ।
ଶୁଣିଣ ଜନକ ନୃପତି ଅନେକ ବିନୟ ହୋଇଲେ ।
ଚାରି କୁମାରୀଙ୍କୁ ଘେନିଣ ବଭା ମଣ୍ଡପେ ମିଳିଲେ । ୪୪ ।
ଦଶରଥ ଚାରି କୁମରନ୍ତ ଯଥା ବିଧିରେ ବଭା କଲେ ।
ଯେ ଯେତେମାନଙ୍କୁ ଭଜନ ଯଉତୁକମାନ ଦେଲେ । ୪୫ ।

ରୂଳଣି ସହସ୍ର ମତ୍ତଗଜ ଲକ୍ଷେକ ଘୋଡ଼ା ସିନ୍ଧୁ ଜାତି ।
ମଣିମୟ ମଣ୍ଡଣୀ କାମିନୀ ଲକ୍ଷେକ ଗ୍ରୁମର ଧରନ୍ତି । ୪୬ ।
ପୃଥ୍ୱୀ ଦାନ ଦେଇ ଜନକ ବୋଲନ୍ତି ମୋ କ୍ଷିତିପତି ରାମ ।
କେବଳ ନାମ ମାତ୍ରକ ହୋଇଥିବି ମୁଁ ବଇଦେହୀ ଗ୍ରାମ । ୪୭ ।
ଏତେକ କହୁଣ ଜନକ ରାୟେ ନୟନୁ ବହେ ଅଶ୍ରୁବାର ।
ଶ୍ରୀରାମର ମୁଖ ଦରଶନେ ଆନନ୍ଦ ନଗ୍ର ନାରୀ । ୪୮ ।
ହସ୍ତ ଯୋଡ଼ଣ ସାରି ବର କନ୍ୟା ଭିତରେଣ ପରବେଶ ।
ଶ୍ରୀରାମ ଚରଣ ସରୋରୁହ ମଧୁପ ଅର୍ଜୁନ ଦାସ । ୪୯ ।

---

# ମାଲ୍ୟବନ୍ତରେ ବର୍ଷାକାଳ

ବଳରାମ ଦାସ



ଏଥୁ ଅନନ୍ତରେ ଗୋ ପାର୍ବତୀ ଦେବୀ ଶୁଣ ।
ମାଲ୍ୟବନ୍ତ ପର୍ବତେ ରହିଲେ ରଘୁରାଣ ॥
ଶ୍ରୀରାମର ଚିତ୍ତ ହେଉଅଛି ଛନ ଛନ ।
ଜଳଧର ମେଘର ଯେ ଉତ୍ସବ ଗଗନ ॥
ଘଡ଼ଘଡ଼ି କରଣ ଯେ ମାରଇ ବିଜୁଳି ।
ସନ୍ଧ୍ୟାକାଳ ଆକାଶରେ ଉଦେ ଆର୍ଦ୍ରାବଳି ॥
ହାତୀଶୁଣ୍ଢ ଉଇଁକର ମେଘ ଗରଜନ୍ତି ।
ନିର୍ଘାତ ଶବଦ କରି ଚଡ଼କ ମାରନ୍ତି ॥
ପୂର୍ବଦିଗ ମେଘେ ଯାଇ ପଶ୍ଚିମେ ପଶନ୍ତି ।
ଶୀତଳ ପବନ ଯେ ବହଇ ଚଉକତି ॥
ଦକ୍ଷିଣ ମେଦୁର ଯେ ସମୁଦ୍ର ପାଣି ତୋଳି ।
ଉତ୍ତର ଦିଗକୁ ହିଂ ସେ ଜଳ ଯେନ ଚଳି ॥
ଇନ୍ଦ୍ର ଧନୁ ଉଇଁ ଅଛଇ ଯେ ଘନ ଘନ ।
ଅସ୍ତକାଳେ ଆଦିତ୍ୟ ଦିଶାଇ ରଙ୍ଗ ବର୍ଣ୍ଣ ॥
ଦିବସେ ମଣ୍ଡଳାକାର ରାତିରେ ଜୁହ୍ନକ ।
ପ୍ରଚଣ୍ଡ ପବନ ଯେ ବହଇ ଝାଙ୍କ ଝାଙ୍କ ॥
କ୍ଷଣେ ଝୁଲୁଗୁଲ କ୍ଷଣେ ଶୀତଳ ଯେ କରେ ।
କ୍ଷଣେ କ୍ଷଣେ ଦିବାକର ଦିଶେ ଆକାଶରେ ॥

ସିନ୍ଧୁ ଗରଜଇ ପୁଣ ହିଗ ରଙ୍ଗ ଦିଶେ।
ଜଳଧର ଧୂମ ପୂର୍ଣ୍ଣ ଗଗନରେ କ ସେ ॥
କୁସୁମ ବର୍ଣ୍ଣ ହୋଇଣ ଆଚ୍ଛାଦଇ ଖରା।
ଜଳଜଳ ଦିଶଇ ସେ ଗଗନର ତାରା ॥
ଚନ୍ଦ୍ରମା-ମଣ୍ଡଳ ସେ ଧୂସର ହୋଇ ଦିଶେ।
ଉଡର ବାହାରେ ସେ ନକ୍ଷତ୍ରଗଣ ମିଶେ ॥
ନିର୍ମଳ ଗଗନେ ସେ କ୍ଷଣକେ ମେଘ ଉଠି।
ପୁଣି ହିଁ ଗର୍ଜିଣ ସେ ଶୂନ୍ୟରେ ଆଚ୍ଛାଦଇ ॥
ହିବସେ ଗର୍ଜନ ଯେ କରଇ ଗମ ଗମ।
ଭୂମିକମ୍ପ କରିଣ କରଇ ଦମ ଦମ ॥
ଆଷାଢ଼ ମାସ ପ୍ରବେଶ ହୋଇଲାକ ସନ୍ଧି।
ଝିମି ଝିମି କରିଣ ସେ ବରଷଇ ଚହ୍ନି ॥
ବିଜୁଳି ଦେଖାଇଣ ମାରଇ ଘଡ଼ଘଡ଼ି।
କ ଜାଣି ପର୍ବତ ଶୃଙ୍ଗ ପଡ଼ିବ କ ଝଡ଼ି ॥
ସନ୍ଧି ପ୍ରବେଶ ହୋଇଲା ଦୁଃସହ ବରଷା।
ନାନା ପକ୍ଷୀମାନେ ତହିଁ ଭିଆଇଲେ ବସା ॥
ବୃକ୍ଷମାନେ ପଲ୍ଲବନ୍ତ କଅଁଳନ୍ତି ଲତା।
ମୟୂର ଚଢ଼ାଇ ଯେ ମଦନେ ଉନମତ୍ତା ॥
ମୃଗଭୟ ଛାଡ଼ିଣ ଚରନ୍ତି ଏଣେତେଣେ।
କୋକିଲ ଝିଙ୍କାର ପଶିଲେ ଗହନ ବନେ ॥
ବୃକ୍ଷମାନେ ଦିଶନ୍ତି ଯେ ନୂଆ ପରକାର।
କଦମ୍ବ ପୁଷ୍ପମାନେ ଫୁଟନ୍ତି ନିରନ୍ତର ॥
ଜାମୁଫଳ ପାଚି କରି ପଡ଼ନ୍ତି ଭୂମିରେ।
ବନ ଫଳ ପାଚି ପଡ଼ୁଛନ୍ତି କେତେ ତଳେ ॥

ବନର କୁକ୍‌କୁଟମାନେ କାମେ ଖେଦାଖେଦ୍ଧି ।
ପାତାଳଗଙ୍ଗା ନାମେ ଯେ ବହେ ତହିଁ ନଦୀ ॥
ଜଳଖୁମ୍ପା କାହାମ ଯେ ପାଡ ହଂସାବଳୀ ।
ଖରହଂସ ବକ ଯେ କରନ୍ତି ଜଳକେଳି ॥
ଶ୍ରାବଣ ପ୍ରବେଶ ହୋଏ ଏଥୁ ଅନନ୍ତରେ ।
ଘୋର ବୃଷ୍ଟି କରଣ ବରଷେ ଜଳଧରେ ॥
ଅଖଣ୍ଡିତ ଧାରା ଯେ ନ ଦିଶେ ଦଶ ଦିଶ ।
ବନ ପଲ୍ଲବଣ ପୁଣି ହୁଅଇ ଅଦୃଶ୍ୟ ॥
ନଦୀମାନେ ବଢ଼ନ୍ତି ଯେ ପୂରେ ପୁଷ୍କରଣୀ ।
ପର୍ବତ ଉପରୁ ଝରି ପଡ଼ଇ ଯେ ପାଣି ॥
ସୂର୍ଯ୍ୟଙ୍କ କରଣ ତେଜ ନ ଦିଶେ ଗଗନେ ।
ବୃକ୍ଷେ କମ୍ପମାନ ହୁଅନ୍ତି ପ୍ରଚଣ୍ଡ ପବନେ ॥
ମାଲ୍ୟବନ୍ତ ପର୍ବତେ ଯେ ଶ୍ରୀରାମ ଅଛନ୍ତି ।
ଅନେକ ଦୁଃଖେଣ ସେ ବରଷା ବଞ୍ଚୁଛନ୍ତି ॥

---

# ସ୍ୱର୍ଗାରୋହଣ

ଜଗନ୍ନାଥ ଦାସ

●

## ଅର୍ଜୁନ ଉବାଚ

ସନ୍ଦେଶ ଶୁଣ ନରନାଥ । କୃଷ୍ଣେ ମୁଁ ହୋଇଲି ବଞ୍ଚିତ ॥
ମୋର ଜୀବନବନ୍ଧୁ ହରି । ତାର ବିୟୋଗେ ହତଶିରି ॥
ଯେତେକ ପ୍ରତାପ ମୋହର । ଦେଖ ପ୍ରତ୍ୟକ୍ଷେ ନୃପବର ॥
ସେ ତେଜ କୃଷ୍ଣ ସଙ୍ଗେ ଗଲା । ଜୀବନ ଥାଉ ଦେହ ମଲା ॥
ଯାହାର ପାଦେ ଆଶ୍ରେ କରି । ନିଜ ଗାଣ୍ଡୀବ କରେ ଧରି ॥
ଦ୍ରୌପଦ-ଗୃହେ ରାଜାମେଳେ । ବିବାହ ସ୍ୱୟମ୍ବର ବେଳେ ॥
ଯେତେ ମିଳିଲେ ରାଜପୁତ୍ରେ । କନ୍ୟା ଲଭନେ ଲୋଭଚିତ୍ତେ ॥
ହେଲେ ତାହାଙ୍କ ତେଜ ହରି । ଲକ୍ଷ ବିନ୍ଧି ଲଭିଲି ନାରୀ ॥
ଅମରଗଣ ତୁଲେ ପୁଣି । ଖାଣ୍ଡବ ଇନ୍ଦ୍ର ତେଜ ଜିଣି ॥
ଜାରକୁ ବାହୁବଳେ ଜିଣି । ରାଜାଙ୍କୁ ବନ୍ଦୀ ଘରୁ ଆଣି ॥
କପଟପାଶା କରି ବାଦେ । କୌରବ ତୋତେ ସଭା ମଧ୍ୟେ ॥
ଜିଣି ପାଞ୍ଚାଳୀ କେଶ ଧରି । ବିବସ୍ତ୍ର ସଭା ମଧ୍ୟେ କରି ॥
ଭୟେ ପାଞ୍ଚାଳୀ ସୁମରିଲା । ସେ ବେଳେ ଶ୍ରୀକୃଷ୍ଣ ରଖିଲା ॥
ପୁଣି ଅଜ୍ଞାତ ବନବାସେ । ଦୁର୍ବାସା ଋଷିଙ୍କ ବିଶ୍ୱାସେ ॥
ଭୋଜନ ଅନ୍ତେ ଭିକ୍ଷା-ଅର୍ଥେ । ଅୟୁତେ ବିପ୍ର ଘେନି ସାଥେ ॥
ଭୁଞ୍ଜିବା ପାଇଁ ସ୍ନାନ କରି । ତା ଜାଣି ପ୍ରଭୁ ନରହରି ॥
ଅତିଥିରୂପେ ବିଜେ କଲା । ଶେଷେ ଯେ ଅନ୍ନ ଶାକ ଥିଲା ॥
କରି ପ୍ରସାଦ ତାହା ଖାଇ । ମୁନିଙ୍କ ମନ ମଧ୍ୟେ ଥାଇ ॥

ସନ୍ତୋଷ କଲ୍ ଜଳ ମଧ୍ୟେ । ତକ୍ଷଣେ ବ୍ରାହ୍ମଣେ ଆନନ୍ଦେ ॥
ସନ୍ତୋଷେ ନିଜ ପୁର ଗଲେ । ସେ ଦୁଃଖୁଁ ସେ ରଖିଲେ ଭଲେ ।
ଯେଉଁ ଗୋବିନ୍ଦ ବନ୍ଧୁ ପଣେ । କୁରୁସାଗର ଘୋର ରଣେ ॥
ତରିଲ ଦୁସ୍ତର ସାଗର । ଦେବ-ଦାନବେ ଅଗୋଚର ॥
ସମରେ ରିପୁଦଳ ଜିଣି । ଅନେକ ଧନରତ୍ନ ଆଣି ॥
ଯେ ହରି ମୋର ରଥେ ବସି । ଅଗାଧ କୁରୁବଳେ ପଶି ॥
ଭୀଷ୍ମ ସବିତା-ସୁତ କୃପ । ଶଲ୍ୟ ସହିତେ ଯେତେ ନୃପ ॥
ତାହାଙ୍କ ଅଗ୍ରେ ରଥ କରି । ଅଶ୍ୱ ରଶ୍ମି କରେ ଧରି ॥
ରିପୁ ଆୟୁଧ ଭୁଲେ ମନ । ହରିଲେ ନନ୍ଦର ନନ୍ଦନ ॥
ବିରାଟ ଗୋଧନ ହରଣେ । ମହା ଦୁସ୍ତରୁ ଘୋର ରଣେ ॥
ସେ କୁରୁ ଦୁସ୍ତର ସାଗରେ । ଭୀଷ୍ମ ସହିତେ ଯେତେ ବୀରେ ॥
ଅମୋଘ ଶର ବରଷନ୍ତି । ଦେବ ଦାନବେ ନାହିଁ ଭ୍ରାନ୍ତି ॥
ଯାର ଚରଣେ ଆଶ୍ରେ କରି । ତାହାଙ୍କ ବଳ ଦର୍ପ ହରି ॥
ଗୋଧନ ନେଲ ନିଜପୁର । ଯେ ହରି ମୋତେ କଲେ ଦୂର ॥
ଯାର ମହିମା ଏ ସଂସାରେ । ଭକତ ନିସ୍ତରନ୍ତି ନରେ ॥
ସ୍ୱଭାବେ ସେ ଯେ ସତ୍ୟବ୍ରତ । ସଂଗ୍ରାମେ ଥିଲ ଭୂମିଗତ ॥
ଯାହାର ପାଦପଦ୍ମ ଚିତ୍ତେ । ଜ୍ଞାନୀ ଯେ ଭଜୁଥାନ୍ତି ନିତ୍ୟେ ॥
ମହାରଥୀଙ୍କ ଚିତ୍ତେ ଯାଇ । ପ୍ରବେଶ କଲ ଭାବଗ୍ରାହୀ ॥
ନୟନେ ମୋ ରୂପ ଦେଖନ୍ତି । ଦେଖନ୍ତେ କେହି ନ ମାରନ୍ତି ॥
ସେ କୃଷ୍ଣ ବସି ମୋର ପାଶେ । ଶୋଭିତ ଶୁକ୍ଳ ମନ୍ଦହାସେ ॥
ଡାକନ୍ତି ମୋର ନାମ ଧରି । ଅତି ଆନନ୍ଦେ ଦଇତାରି ॥
ହେ ପାର୍ଥ, ହେ ସଖେ ଅର୍ଜୁନ । ହେ କୁରୁ-ନନ୍ଦନ ମୋ ପ୍ରାଣ ॥
ତାହାର ଗୁଣ-କର୍ମ ଯେତେ । ଦହନ୍ତି ମୋର ଅନ୍ତର୍ଗତେ ॥
ଶୟନ - ଆସନ - ଭୋଜନେ । ମୁହିଁ ଯେ ତାଙ୍କ ସନ୍ନିଧାନେ ॥

ସଙ୍ଗେ ବହୁତ ସଖାପଣେ । ତା କରେ କର-କରଷଣେ ॥
ସେ ଅପରାଧ ମୋର ହରି । ନ ଧରେ ସ୍ନେହ ଚିତ୍ତେ ଭରି ॥
ସଖୀର ସଖୀ ଯେସନ୍ତେ ସହେ । ପିତାମାତାଙ୍କ ଯେସନ୍ତେ ପୋଏ ॥
ନୃପେନ୍ଦ୍ର ଶୁଣ ମୋର ବାଣୀ । ମୋତେ ଠକଲେ ଚକ୍ରପାଣି ॥
ମୋହର ସଖା ପ୍ରିୟ ହରି । ହୃଦୟ ଗଲା ଶୂନ୍ୟ କରି ॥
ଦେଖ ମୋହର ଖରପଣ । ମାଗେଁ ଗୋବନ୍ଦ ପତ୍ନୀଗଣ ॥
ଆବୋରି ନ ପାରିଲି ବଳେ । ତକ୍ଷଣେ ଉଠିଲେ ଗୋପାଳେ ॥
ସେହି ଗାଣ୍ଡୀବ ଧନୁ ମୋର । ସେହି ଅକ୍ଷୟ ତୂଣ ଶର ॥
ସେହି ବିମାନ ଅଶ୍ୱ ଦେଖ । କ୍ଷଣକେ ହୋଇଲା ନିରେଖ ॥
ଶୁଣ ହେ ନୃପ ଶୁଦ୍ଧଚେତା । ବନ୍ଧୁ-ବାନ୍ଧବାଦି ବାରତା ॥
ଅପରେ ଯେତେ ଯଦୁକୂଳେ । ନିଶ୍ଚିନ୍ତେ ଥିଲେ କୁଶସ୍ଥଳେ ॥
ବ୍ରାହ୍ମଣ ଶାପ-ଅବସାନେ । ମିଳିଲେ ଏରକାର ବନେ ॥
ବାରୁଣୀ ମଦ୍ୟ କଲେ ପାନ । ଭୋଳେ ହୋଇଲେ ହତଜ୍ଞାନ ॥
ଏରକା ଯଷ୍ଟି କରେ ଧରି । ଏକୁ ଆରେକ ମରାମରି ॥
ଆମ୍ଭାକୁ ନ ଜାଣନ୍ତି ଭୋଳେ । ନାଶିଲେ ବ୍ରହ୍ମଶାପ-ଫଳେ ॥
ଏଣୁ ଯାଦବ ବଳ ନାଶ । ରହିଲେ ସାତ ପାଞ୍ଚ ଶେଷ ॥
ଈଶ୍ୱର-ଲୀଳା ଏ ଜଗତେ । ପ୍ରାଣୀ ଯେ ଈଶ୍ୱର ଆୟତ୍ତେ ॥
ମାରନ୍ତି ଏକୁ ଆରେ ବଳେ । ଜଳର ଜନ୍ତୁ ଯେସନ୍ତେ ଜଳେ ॥
ନିର୍ବଳ ଜନ୍ତୁଙ୍କୁ ଗିଳନ୍ତି । ନିଜ ମରଣ ନ ଜାଣନ୍ତି ॥
ଏହି ପ୍ରକାରେ ଯଦୁବଳେ । କଳି ଭିଆଇ ମଦଭୋଳେ ॥
ଯଦୁଙ୍କୁ ଯଦୁବଳେ ମାରି । ଭୂମିର ଭାର ଅପହରି ॥
ଏମନ୍ତେ ପାଣ୍ଡବ ଅର୍ଜୁନ । କୃଷ୍ଣ-ଚରଣେ ଦେଇ ମନ ॥
ସୁହୃଦ ଭାବ ଗାଢ଼େ ଚିନ୍ତି । ଲଭିଲା ସୁନିର୍ମଳ ଶାନ୍ତି ॥
ଥିଲା ଯେ ଅଶେଷ କଲୁଷ । ଭକ୍ତି-ଭାବରେ ଗଲା ନାଶ ॥

ନିର୍ମଳ ବୁଦ୍ଧି ପ୍ରକାଶିଲା । ଗୋବିନ୍ଦ ବାକ୍ୟ ସୁମରିଲା ॥
ସଂସାର ମଧ୍ୟେ ରଥେ ଥାଇ । ଯେ ଗୀତା କୃଷ୍ଣ ମୁଖେ ଗାଇ ॥
ତାହା ସୁମରି ଶୁଦ୍ଧମନେ । ଶୋକ ଛାଡ଼ିଲା କୃଷ୍ଣ ଧ୍ୟାନେ ॥
ପ୍ରକୃତି ଗୁଣେ ଗୁଣ ଲିଙ୍ଗ । ଅସଙ୍ଗ ସଙ୍ଗ ହେତୁ ଭଙ୍ଗ ॥
ଆତ୍ମା ରମଣ ଅଂଶେ ହରି । ସେ କୃଷ୍ଣ ଗଲେ ନିଜ ପୁରୀ ॥
ଅର୍ଜୁନ ମୁଖୁ ବାକ୍ୟ ଶୁଣି । ନିବେଦ୍ଧ ନୃପ ଚୂଡ଼ାମଣି ॥
କୁନ୍ତୀ ଯେ ନିଜ ପୁରେ ଥିଲେ । ଗୋବିନ୍ଦ-ବିୟୋଗ ଶୁଣିଲେ ॥
ତକ୍ଷଣେ ପାଇ ଦିବ୍ୟଜ୍ଞାନ । ଗୋବିନ୍ଦପାଦେ ହେଲେ ଲୀନ ॥
ଯେଣୁ ଗୋବିନ୍ଦ ମନ୍ତ୍ରୀ ତେଜ । ସ୍ୱଭାବେ ନିଜ ଧାମ ଭଜ ॥
ତାର ମହିମା ନରଲୋକେ । ସାଧିବେ ଏକଲୁ ଆନରକେ ॥
କଳି ଚରନ୍ତି ଭବ-ବନେଁ । କଳି ଆଗମ ସେହିଦିନେଁ ॥
ମିଳିଲା ନରଲୋକେ ଆସି । ତକ୍ଷଣେ ଗ୍ରାମେ ଗ୍ରାମେ ପଶି ॥
ସକଳ ପୁରେ ପ୍ରାଣୀ ଚିତ୍ତେ । ଲୋଭ କପଟ ଦମ୍ଭମତେ ॥
ପ୍ରାଣୀ ହିଂସନେ ଧର୍ମନାଶେ । ପ୍ରାଣୀଏ କଳିର ବିଶ୍ୱାସେ ॥
ନିଷ୍ଠୁର ଚିତ୍ତ ସର୍ବଜନ । ତା ଦେଖି ଧର୍ମର ନନ୍ଦନ ॥
ସ୍ୱର୍ଗ ଗମନ ମନେ ଗୁଣି । ତକ୍ଷଣେ ପରୀକ୍ଷିତେ ଆଣି ॥
ଉତ୍ତମ ରାଜଚିହ୍ନ ଦେଖି । ସକଳ ଗୁଣ ଉପଲକ୍ଷି ॥
ଆତ୍ମାର ତୁଲ୍ୟ କରି ମଣି । ଅନେକ ତୀର୍ଥ ଜଳ ଆଣି ॥
ହସ୍ତିନାପୁରେ ନରଲୋକେ । ସ୍ଥାପିଲେ ନୃପ ଅଭିଷେକେ ॥
ଯାଦବ ବଂଶ ଶେଷ ଥିଲା । ବଜ୍ର ଯେ ଅନିରୁଦ୍ଧ ବଳା ॥
ମଥୁରାପୁରେ ଧର୍ମଘଟେ । ସ୍ଥାପିଲେ ସୁରସେନ ପାଟେ ॥
ସକଳ ଭୋଗ ଦୂର କରି । ସଂସାର ବନ୍ଧୁ ଅପସରି ॥
ଆତ୍ମାରେ ଆତ୍ମା ଅଗ୍ନି ଜାଳି । ସର୍ବ ବିଷୟ ଘୃତ ଢାଳି ॥
ଜ୍ଞାନ ଗୋଚରେ ଅଗ୍ନିପାଳ । ତକ୍ଷଣେ ଧର୍ମର ନନ୍ଦନ ॥

ଅଶେଷ କର୍ମ ପାଶ ଛେଦ । ଯୋଗ ଶରୀର ରନ୍ଧ୍ର ରୁନ୍ଧି ॥
ମନ ବଚନ ଲୀନ କରି । ବାୟୁ ଧାରଣା ପ୍ରାଣ ଧରି ॥
ବ୍ରହ୍ମବାଣେ ଥୋଇ ଚିତ୍ତ । ଉତ୍ତର ପଥେ ଉପଗତ ॥
ଚର ବସନ ନବଦ୍ୱାର । ମଜନ ମୁକ୍ତ କେଶଧର ॥
ଜଡ଼ ଉନ୍ମତ୍ତ ଭୂତ ପ୍ରାୟେ । ଲୋକେ ଦେଖାଇ ନିଜ କାୟେ ॥
ଜନ ବଦନକୁ ନ ଗୁହିଁ । ଅନ୍ଧ ବଧିର ପ୍ରାୟେ ହୋଇ ॥
ହୃଦେ ନବେଶି ବେଦ ପାଣି । ଉତ୍ତର ଦିଗେ ନୃପମଣି ॥
ପୂର୍ବେ ଅଶେଷ ମୁନି ସନ୍ତେ । ମୋକ୍ଷ ହୋଇଲେ ଯେଉଁପଥେ ॥
ପରମବ୍ରହ୍ମ ଚିନ୍ତ ଚିତ୍ତେ । ପ୍ରସ୍ଥାନ କଲେ ସ୍ୱର୍ଗ ପଥେ ॥
ପଥେ ଚଳନ୍ତି ଗୁଣଭାଇ । ରାଜାର ଅନୁପଥ ହୋଇ ॥
କୃଷ୍ଣ ଚରଣେ ଚିତ୍ତ ଦେଲେ । ପରମଗତି ସେ ଲଭିଲେ ॥
ବିଦୁର ଥିଲେ ବନବାସେ । ପ୍ରଭାସ ତୀର୍ଥେ ମୋକ୍ଷ ଆଶେ ॥
ଗୋବିନ୍ଦ-ଚରଣ ନିଶ୍ଚଳେ । ପ୍ରାଣ ଛାଡ଼ିଲେ ଯୋଗବଳେ ॥
ତକ୍ଷଣେ ଦ୍ରୁପଦ କୁମାରୀ । ଭର୍ତ୍ତାର ପଥ ଅନୁସରି ॥
ଗୋବିନ୍ଦେ ଦେଇ ପଞ୍ଚ ପ୍ରାଣ । ପଥରେ ଛାଡ଼ିଲା ଜୀବନ ॥
ଏବେ ହୋ ଶୁଣ ବିପ୍ରଜନେ । କୃଷ୍ଣ-ମହିମା ଶୁଦ୍ଧ ମନେ ॥
ଗୋବିନ୍ଦ-ଚରଣ କମଳେ । ପଣ୍ଡୁକୁମରେ ଭାବଭୋଳେ ॥
ସଂସାର ମାୟା ଦୂର କଲେ । ଜଗତ ଜନ ନିସ୍ତାରିଲେ ॥
ପରମ ମଙ୍ଗଳ ଏ ବାଣୀ । ଯେ ପ୍ରାଣୀ ଶୁଦ୍ଧଚିତ୍ତେ ଶୁଣି ॥
ସେ ଭକ୍ତି ଲଭେ ଅପ୍ରମାଦେ । ଅନ୍ତେ ପଶଇ କୃଷ୍ଣ ପାଦେ ॥
କୃଷ୍ଣ ମହିମା ସୁଧାରସ । କହଇ ଜଗନ୍ନାଥ ଦାସ ॥

---

# କୃଷ୍ଣପ୍ରାପ୍ତି

ଭୂପତି ପଣ୍ଡିତ



ଜ୍ଞନ ବୋଲନ୍ତି ମୁନି ଶୁଣ । ମୁନି କହନ୍ତି ହେ ରାଜନ ।।
ଶୁଣିଣ ହେଲେ କୃତ କୃତ । ବିଚିତ୍ର ଗୋବିନ୍ଦ ଚରିତ ।।
ଗୋପୀଏ ବଂଶୀବଟେ ଥିଲେ । ବିଭୁର ହୃଦୟ-କମଳେ ।।
ଏକଇ ଗୋପୀ କହେ ଶୁଣ । ଏ ଗଲା ଏକାଦଶୀ ଦିନ ।।
ସୁଜ୍ଞାନ ପଣ୍ଡା ଏହା କହି । ଏ କୃଷ୍ଣ ସବୁଘଟେ ରହି ।।
ଏ ଗୋ ସବୁଙ୍କୁ ଦେଖିଥାନ୍ତି । ଏହାଙ୍କୁ କେହି ନ ଦେଖନ୍ତି ।।
ଏ କଥା ତାର ମୁଖୁଁ ଶୁଣି । ମୁଁ ଆଜ ମନେ ମନେ ଗୁଣି ।।
ଏମନ୍ତ ବେହର ଘୋର ବନେ । ଆମ୍ଭେ ଗୋ ଧରିବା କେସନେ ।।
ସୁଚିତା କହେ ଏହା ଶୁଣି । ମୁଁ ବିପ୍ରମୁଖୁଁ ଅଛି ଶୁଣି ।।
ପୂର୍ବେ ଯେ ହିରଣ୍ୟକୁମର । ସେହି ସେବକ ଗୋବିନ୍ଦର ।।
ତାହାକୁ ଧରି ତା' ବଇରୀ । ବୋଇଲା କାହିଁ ତୋର ହରି ।।
ସେ ତାକୁ ବୋଇଲାରେ ଶୁଣ । ଜଗତେ ପୂର୍ଣ୍ଣ ଭଗବାନ ।।
ରଖିବ ବୋଲି ନିଜ ଦାସ । ଏ ସ୍ତମ୍ଭେ ହୋଇବେ ପ୍ରକାଶ ।।
ହେ ସ୍ତମ୍ଭ ସ୍ୱଭାବେ ପଥର । ତହୁଁ ସେ ହୋଇଲେ ବାହାର ।।
ଏରୂପେ ମଲା ତା ବଇରୀ । ପ୍ରକାଶ ହେଲେ ରୂପ ଧରି ।।
ସେ ମନ ସ୍ତମ୍ଭେ ଦୃଢ଼ କଲା । ସ୍ତମ୍ଭେ ଗୋବିନ୍ଦଙ୍କୁ ପାଇଲା ।।
ଆମ୍ଭର ମନ ଯେବେ ସତ । ପାଇବୁ ଗୋବିନ୍ଦ ସଙ୍ଗତ ।।
ସେ ଧରି ଅଣିମା ପ୍ରମାଣ । ଏ କଥା ମୂଳ କରି ଜାଣ ।।
ସୁଧର୍ମା ବୋଲନ୍ତି ବିଶ୍ୱର । କାହ୍ନୁ ବଚନ ମନେ ଧରି ।।

କୃଷ୍ଣଙ୍କୁ କେ ଧରି ପାରିବ । ବ୍ରହ୍ମା ବାସୁକୀ ଯେ ବାସବ ॥
ଯଜ୍ଞାଦି ନାନା ଧର୍ମେ ସତ । କୃଷ୍ଣ ହୁଅନ୍ତି ପରାପତ ॥
ପୂର୍ବେ ଯେ ବଳି ଦଣ୍ଡଧାରୀ । ଯଜ୍ଞାଦି ନାନା କର୍ମ କରି ॥
ତା ନିଜ କର୍ମ ଯାହା ଦେଖି । ଭିଖାରୀ ହେଲ ପଦ୍ମମୁଖୀ ॥
ଏବେ ଗୋ ଦେଖ ଧର୍ମବଳ । ଗୋବିନ୍ଦ ତା'ର ଦ୍ୱାରପାଳ ॥
ଏଣୁ ଜାଣିଲୁଁ କଥା ସତ । କୃଷ୍ଣ ଟି ଧର୍ମରେ ପ୍ରାପତ ॥
ଯେବେ ଆମ୍ଭର ଧର୍ମ ଥିବ । ତାହାର ଇଚ୍ଛାରେ ଆସିବ ॥
ସୁଧର୍ମାମୁଖୀ ତାହା ଶୁଣି । ବୋଲନ୍ତି ରାଧା ଠାକୁରାଣୀ ॥
ଶୁଣ ସୁଧର୍ମା ଆଗେ ଆସ । କହିବା ତତ୍ତ୍ୱ ଉପଦେଶ ।
ଏ ନାନା ମତେ ଧର୍ମ କରି । ପ୍ରାପତ ହୁଅନ୍ତି ଶ୍ରୀହରି ॥
ଏ ଧର୍ମଫଳ କରି ପୂର୍ଣ୍ଣ । ଅନ୍ତର ହୋନ୍ତି ଭଗବାନ ॥
ଏ ପରାପତ ଚିର ନୁହେଁ । ପୁଣି ପଡ଼ଇ ମାୟାମୋହେ ॥
ଖାତକ ଶୁଝିଗଲେ ଋଣ । ସାହୁର ନାହିଁ ପ୍ରୟୋଜନ ॥
ତଦ୍‌ବତ ଶୁଝି ଧର୍ମ-ଋଣ । ଅନ୍ତର ହୋନ୍ତି ଭଗବାନ ॥
ନବଧା ଭକ୍ତି ମଧ୍ୟେ ଜାଣ । ସବୁରି ପ୍ରେମଟି ପ୍ରଧାନ ॥
ପ୍ରେମେ ଅବଶ୍ୟ କୃଷ୍ଣ ପାଇ । କୃଷ୍ଣ ଯେ ନିଗରେଳେ ରୁହଇ ॥
ଅପ୍ରୀତି ପ୍ରୟୋଜନ ତା'ର । ଗୋବିନ୍ଦ ସହଜେ ଅନ୍ତର ॥
ଆମ୍ଭର ପ୍ରୟୋଜନ ପ୍ରେମ । ଏଣୁ ଏ ନୁହଇ ଉତ୍ତମ ॥
ଆମ୍ଭର ନିଜ ପ୍ରୟୋଜନେ । ଆସିଲୁ ତାର ବେଣୁସ୍ୱନେ ॥
ପ୍ରୟୋଜନରେ ପ୍ରେମ ଦେଖି । ଗୋବିନ୍ଦ ଗଲେଟି ଉପେକ୍ଷି ॥
ଏବେ ହେଁ ନିଜ ପ୍ରୟୋଜନେ । ତାହାଙ୍କୁ ଖୋଜି ଅଛୁ ବନେ ॥
ଅପ୍ରୟୋଜନ ପୂର୍ଣ୍ଣ କରି । ନିଶ୍ଚୟ ଘୁଞ୍ଚି ଯିବ ହରି ॥
ଘୁଞ୍ଚିଲା ଉତ୍କରେ ଆମ୍ଭର । ହୋଇବ ପ୍ରେମ ବଳସ୍ୱାର ॥
ଦର୍ଶନ ବାଞ୍ଛା ମାତ୍ର ଥିବ । କାଳେ ଦର୍ଶନ ଯେ ନୋହିବ ॥

ଦର୍ଶନେ ନ ରସିବ ମନ । ଏକାନ୍ତ ପ୍ରେମରେ ନିମଗ୍ନ ॥
ଦର୍ଶନ ସ୍ପର୍ଶନରେ ଇଚ୍ଛା । ନ ଥିବ କିଛି ମନବାଞ୍ଛା ॥
ତେବେ ଲଭିବା କୃଷ୍ଣରସ । କୃଷ୍ଣ ହୋଇବେ ଆମ୍ଭ ବଶ ॥

---

# ଗୋଷ୍ଠ ବାହୁଡ଼ା

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା



ମୋର କଳା କାହିଁଚ; ବଣୁଅଛୁ କେଉଁ ସଙ୍ଗ ଲୋ
  ଲବଣୀ ମାଗଇ ଲଙ୍ଗ ଲୋ,
    ବନେ କଲୁ କଉଁ ପାଞ୍ଚ ଲୋ । ଘୋଷା ।
ଯଶୋଦା ଉଭା ଦୁଆରେ
  ଦେଖନ୍ତି କୁମର ଗାଈ ପଛରେ ସେ,
    ଆସୁଅଛୁ ଧୀରେ ଧୀରେ ଲୋ । ୧ ।
ବଦରୀ ଫଳ ଆକାର,
  ଗୋରୁ ଧୂଳି ଉଡ଼ି ତନୁ ଧୂସର
    ହେଲେ କାଳିଆ ସୁନ୍ଦର ଲୋ । ୨ ।
ଯାଚିଲେ ନ ଖାଇ ସର,
  ଭୁଞ୍ଜୁଥିବ ବନଫଳ ନିକର
    ବୋଲୁଥିବ କି ମଧୁର ଲୋ । ୩ ।
ଶୋଇଥିବ ମଞ୍ଚି ଶେଯେ,
  ପିନ୍ଧା ବାସ ଚିହ୍ନି ଦେହେ ବିରାଜେ
    ଗୋଳି ହୋଇଗଲା ସେ ଯେ ଲୋ । ୪ ।
ସଜୁରି ମୁଣ୍ଡରେ ଫୁଲ
  ମୋ ଧନ ମସ୍ତକେ ଯେଉଁ ମଞ୍ଜୁଳ ସେ,
    ରଙ୍ଗ ପୁଷ୍ପ କାମୁଡ଼ାଳ ଲୋ । ୫ ।

ଶିରେ ମୟୂର ଚନ୍ଦ୍ରିକା,
ଦିଶଇ ସୁନ୍ଦର ମୋ ମନ ଦକା ସେ
ଡାକମା ଆତଙ୍କ ଶଙ୍କା ଲୋ । ୬ ।
ଗଳେ ବନଫୁଲ ମାଳ,
ବାହେ ବାଜୁବନ୍ଧ କୁସୁମ ଡାଳ
ଖୋସେ ରଙ୍ଗିଆ ଗୋପାଳ ଲୋ । ୭ ।
କପାଳେ ଚନ୍ଦନପାଟି,
ତା' ତଳେ ଦେଇଛି କେ ରେଖା କାଟି
ଗୋଳ ରଙ୍ଗେ ରଙ୍ଗମାଟି ଲୋ । ୮ ।
ଆସେ ରସେ ଢଳ ଢଳ,
ଗୋପାଳ ବାଳରେ ହୋଇ ମଣ୍ଡଳୀ
ଧରିଛନ୍ତି କରତାଳ ରେ । ୯ ।
ଅନା ଗୋ ରୋହିଣୀ ଅନା,
ତୁମ୍ଭ ଗଣ୍ଠି ଧନ, କାଳିଆସୁନା
ଆଜ କରେ କେତେ ଅନା ଲୋ । ୧୦ ।
କାହୁଁ ସେ ଶିଖିଲା ନାଟ,
ଲୋଟଣୀ ପାରୁଆ ପରି ଚହଟ
ନାଚି ଆସେ ଦାଣ୍ଡ ହାଟ ଲୋ । ୧୧ ।
କୋଇଲି ପରି ବୋବାଇ,
କଉତୁକଆ ମୋ କଳା କହ୍ନାଇ
ଫସାର କରୁଛି ବାଇ ଲୋ । ୧୨ ।
କୁହାଟ ଯେହ୍ନେ ମୟୂର,
କେତେ ଦେଖିବ ତାହାର ହୃଦର
ହସାଇ ସେ ଯେ ଅପାର ଲୋ । ୧୩ ।

ସାତ ନାହିଁ ପାଞ୍ଚ ନାହିଁ,
ବୃଦ୍ଧକାଳେ ଦେଲ୍ ସଙ୍ଗାଳ ବନ୍ଧ
ଚୋଳଲେ ଗଡ଼ ପଡ଼ିଇ ଲୋ । ୧୪ ।
ଶୁଖିଛି ଚନ୍ଦ୍ରବଦନ,
ବୁଲୁଛି ଯାଇ କ ଜୀବ-ଜୀବନ
ଖରରେ ଅଙ୍ଗ ମଳାନ ଲୋ । ୧୫ ।
ନକଟେ ଚରଏ ବତ୍ସା,
ଯମୁନାକୁ ଗଲେ ଦେଖଇ ଆସୁ ସେ
ଘରେ ଆସେ ମନ ଇଚ୍ଛା ଲୋ । ୧୬ ।
ଆଉ ନ ଛାଡ଼ିବ ବନେ,
ଆଜଠାରୁ ମୋର ରହିଲ ମନେ
ଝୁରି ମରିବ କେସନେ ଲୋ । ୧୭ ।
ପ୍ରବେଶ ପାଶରେ ହରି,
ଯଶୋଦା ଚରଣେ ପ୍ରଣାମ କରି,
ମାତା ସ୍ନେହେ କୋଳେ ଧରି ଲୋ । ୧୮ ।
ସପ୍ତ ଅଳନ୍ତ ବନ୍ଦାଇ,
ଘରକୁ ନେଲେ ଅନ୍ନ ନଉଛାଇ
କବସୂର୍ଯ୍ୟ ବ୍ରହ୍ମା ଥାଇ ଲୋ । ୧୯ ।

---

# ଶରତ ବର୍ଣ୍ଣନା

ଦୀନକୃଷ୍ଣ ଦାସ



କ୍ରମେ ପ୍ରବେଶ ହୋଇଲା ଶରଦ,
ଜଳଧରେ ଦିଶିଲେ ବିଶଦ ।
କୃପଣ ହୋଇଲେ ଅମୃତ ଦାନେ,
କେବଳ ଅମ୍ବୁଦ ହେଲେ ଗର୍ଜନେ ।
କକୁଭ ନଭ ଦିଶିଲେ ଶୋଭା,
କଲେ ପ୍ରକାଶ ପୁଷ୍ପବନ୍ତେ ପ୍ରଭା । ୧ ।
କଲୁଷ ନଦୀଜଳରୁ ତୁଟିଲେ,
କମଳ କୁମୁଦମାନେ ଫୁଟିଲେ ।
କେଳି କଲେ ହଂସ କୋକ ସାରସ,
କାମିନୀମାନଙ୍କ ସଙ୍ଗେ ବିଶେଷ ।
କମଳା-ନେତ୍ର ଛଟକ ପରାୟେ,
କ୍ରୀଡ଼ନ୍ତ ଶଫରୀ କମ୍ପାଇ କାୟେ । ୨ ।
କମମାସୁ ଦିଶେ ପୁଳିନ କୂଳ,
କଠିନ ହୋଇଲେ ମହୀ-ଜମ୍ବାଳ ।
କୃଷ୍ଣଅଙ୍ଗରେ ପୀତବାସ ପ୍ରାୟେ,
କେଦାରେ ପକ୍ୱଶାଳୀ ଶୋଭାପାଏ ।
କୃଷାଣ ଗୀତ ଶୁଭେ ବହୁତ,
କରଇ ହରଷ ଜନଙ୍କ ଚିତ୍ତ । ୩ ।

କଣ୍ଠରେ ଶ୍ୱେତଚ୍ଛଦ ଆକୃତ,
କମନୀୟ ଦଶେ ଶିଳୀନ୍ଦ୍ର ପତ୍ର ।
କାମଦେବ-ଶ୍ୱେତ-ଚ୍ଛମର ପ୍ରାୟେ,
କାଶତଣ୍ଡିଫୁଲ ଚଳନ୍ତ ବାୟେ ।
କୁସୁମବନ୍ତ ବନ୍ଧୂକ ଫୁଲ,
କାନ୍ତାକାନ୍ତ ଦନ୍ତ ବସନ ତୁଲ । ୪ ।
କାନ୍ତରହିତ କାନ୍ତା ପ୍ରାୟେ ହୋଇ,
କଳାପୀ କଳାପ ଅଙ୍ଗୁ ପକାଇ ।
କେକା ଛାଡ଼ି ହେଲେ ମଉନବ୍ରତ,
କଲେ ହଂସ ମାନସର ତ୍ୟକତ ।
କଣ୍ଡୁ ତାର-ଗ୍ରାମରେ ଯନ୍ତ୍ରୀ,
ଙ୍କରେ ଗଗନେ ଗମନ କରନ୍ତି । ୫ ।
କପର୍ଦ୍ଦିଯାନମାନେ ହେଲେ ମତ୍ତ,
କଲେ ଲୋଧ୍ରତରୁ କୁସୁମ ଜାତ ।
କୋରକତ ହେଲେ ଅଗସ୍ତି ଦ୍ରୁମ,
କଳାକର ଖଣ୍ଡ ପ୍ରାୟେ ସୁଷମ ।
କୃପଣଲୋକ ଲୋକ ପରାୟେ,
କଷ୍ଟ ପାଇଲେ ଚାତକ ପକ୍ଷିଏ । ୬ ।
କମଳ ମୋଦକ-କୁମାର୍-ଦଶେ,
କୁମୁଦ-ସୁତ ସରରେ ଦଶେ ।
କେତେ କହିବ ଶରଦ ବର୍ଣ୍ଣନା,
କହିଲେ ଅନେକ ହୋଇବ ଦିନା ।
କମଳନେତ୍ର ଦେଖିଲେ ଦନେ,
କୁମୁଦବନ୍ଧୁ ଉଦୟ ଗଗନେ । ୭ ।

କରିଅଛୁ ସବୁ ଦିଗ ଧବଳ,
କମଳାସୁ ଦିଶେ ମହୀମଣ୍ଡଳ ।
କର୍ପୂର ମୋତି ବଞ୍ଚିଲ ପରିଚୟେ,
କି ଅବା କ୍ଷିତି ହେଲ କ୍ଷୀରମୟେ ।
କାହାର ଯଶ ପ୍ରକାଶ ହୋଇ,
କେତେ ଶୁକଳକୁ ଦେଲ ଲୁଚାଇ । ୮ ।
କାଦମ୍ବକୁଳ ନୋହି ଦେଖାଦେଖି,
କଳରବ କରି ହୁଅନ୍ତି ଦୁଃଖୀ ।
କୁଞ୍ଜର କୁଞ୍ଜ ନ ଥିଲ ପରିଚୟେ,
କରାଇ ଜନ-ମନକୁ ସଂଶୟେ ।
କେ ବୋଲେ କାହା ହୃଦକୁ ଗୁହିଁ,
କୁବଳୟ ଫୁଲମାଳ ତୋ କାହିଁ ? ୯ ।
କେ କାହା ପାଶ ଏନ୍ତି କୁ ସମୟେ
କରନ୍ତେ ଗତି ବେଶ କରି କାୟେ ।
କରାଇଲ ପ୍ରତିବନ୍ଧ ବାରଣ,
କରେ ବାରଣକୁ ଯେହ୍ନେ ଆରଣ ।
କାହାର ପୂର ସୁଧାଲେପରୁ,
କରାଇ ନାହିଁ ପରତେ ଦୂରରୁ । ୧୦ ।
କେ କହିବ ଚନ୍ଦ୍ର ରଜନୀ ଶୋଭା,
କରେ ଯେ ଉଗ୍ର ମନମଥ-ପ୍ରଭା ।
କୃଷ୍ଣ ଦେଖି ହେଲେ ତାହାର ବଶ,
କଲେ ବିହାର କରିବାକୁ ରାସ ।
କମଳନେତ୍ର ସୁବେଶ ହୋଇ,
କଦମ୍ବତଳେ ବିଜେକଲେ ଯାଇ । ୧୧ ।

# ରାମ ଚରିତ

କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ



ବଡ଼ ବଡ଼ଋଷି-ମସ୍ତକ ମଣ୍ଡିଲ କୁମାରୀ
କେବଳ ଅଛନ୍ତି ସଙ୍ଗେ ପ୍ରିୟ ସହଚରୀ ଯେ ।
କରିଛୁ କବୀନ୍ଦ୍ର ଗଣ୍ଡ ଏ ପାଞ୍ଚ ସ୍ତବକ
ରାମଚରିତ ଦେଖିଲେ କାମ ପୂର୍ଣ୍ଣ ହେବ ଯେ ।
ଏହି କାଳେ ଜାଳକ ବୋଇଲ ନେଇ ବୃଜ
ନେଇ ବୃଜନ୍ତେ ରଚିଲେ ସେ ମାୟାସମାଜ ଯେ । ୧୯।

ତହୁଁ ନେଳମୋଦ୍‌ଗମ ଜନେ ଲୋମପାଦ ବୋଲେ
ଜରତା ରଥାରେ ଋଷ୍ୟଶୃଙ୍ଗ ଆସ ହେଲେ ଯେ ।
ସେ ଦେଶରେ ବୃଷ୍ଟି କଲା ତୁଷ୍ଟି ହେଲା ରାଜା
ଶାନ୍ତା କାନ୍ତା ଦେଇ କରି କଲା ଦ୍ରବ୍ୟ ପୂଜା ଯେ ।
ଦଶରଥ ମନୋରଥ ସାର୍ଥ ହେବାପାଇଁ
ସେ ମୁନିଙ୍କ ନେଇଗଲେ ରଥରେ ବସାଇ ଯେ । ୨୦

ବ୍ୟୁହ ଚରୁ ହବ୍ୟୁପେ ହୋଇଲେ ପଦ୍ମନାଭ
କଉଶଲ୍ୟା କୈକେୟୀ ସୁମିତ୍ରା ଭକ୍ଷି ଗର୍ଭ ଯେ ।
ଅଭିରାମ ଶ୍ରୀରାମ ଶୁଭଚରିତ ଭରତ
ସଲକ୍ଷଣ ଲକ୍ଷ୍ମଣ ଶତ୍ରୁଘ୍ନ ହେଲେ ଜାତ ଯେ ।
ଋତୁରକ୍ଷା ହେତୁ ବିଶ୍ୱାମିତ୍ର ଆସି ନେଲେ
ବନେ ତାଡ଼କା ମେନିଜ୍ୱବନେ ରେକ୍ଷିଲେ ଯେ । ୨୧ ।

ସୁବାହୁ ସୁବାହୁ ଛଳେ ମାରି ମାରୀଚକୁ
ଆକାଶରେ ଶରେ ଉଡ଼ାଇଲେ ଯେ ଯଶକୁ ଯେ ।
ପଥରେ ପଥରେ ନାରୀ କରି କଲେ ମୋଦ
ଦାସବତ୍ସଳ ଦାସରେ ଧୂଆଇଲେ ପଦ ଯେ ।
ଖଣ୍ଡପରଶୁ କୋଦଣ୍ଡ ବେନିଖଣ୍ଡ କରି
ସୀତା ବିବାହ ନିର୍ବାହ ନୃପ ଦର୍ପ ହରି ଯେ । ୨୨ ।
ବଜ୍ରପରି ଭୃଗୁପତି ଭୃଗୁକୁ ଭେଦିଲେ
ଅଭିଷେକ କରିବା ମମତା ପିତା କଲେ ଯେ ।
ମନ୍ଥରା ମନ୍ଥନେ କାନ୍ତାନୁଜ ଘେନି ସଙ୍ଗେ
ବିପିନ ଶିରକୂଟରେ ବିହରିଲେ ରଙ୍ଗେ ଯେ ।
ବନ୍ଦି କଲେ ଶକ୍ରସୁତ ଚକ୍ଷୁ-ନେତ୍ରବଜ୍ର
ଭରତ ପ୍ରବୋଧି ସୁବୁଦ୍ଧିରେ ଗିରି ତେଜି ଯେ । ୨୩ ।
ବିରାଧ୍ୟୁଧେ ବିରାଧ୍ୟୁଧେ ବଧ ବିସ୍ତରିଲେ
ଅମଳାନ ବସ୍ତ୍ର ବ୍ରହ୍ମଶସ୍ତ୍ରକୁ ପାଇଲେ ଯେ ।
ଦଣ୍ଡକାରଣ୍ୟକୁ ମଣ୍ଡି ସୂର୍ପଣଖା ଦଣ୍ଡି
ଖର ଖର ଦୂଷଣ ତ୍ରିଶିର ଶିର ଖଣ୍ଡି ଯେ ।
ହେମ ସାରଙ୍ଗ ରଙ୍ଗରେ ଲଙ୍କା ଦଣ୍ଡଧାରୀ
ସୀତା ଶୀତାଂଶୁମୁଖୀ କି ଉଟଜରୁ ହରି ଯେ । ୨୪ ।
ଫଳଦାନେ ମୋକ୍ଷଫଳ ଲଭିଲା ଶବରୀ
କ୍ଷୀରପାନେ ବରି ବରଜରେ ବାଞ୍ଛା ପୂରି ଯେ ।
କାମ କାମନାକୁ ମୂନ ଚିତ୍ତେ ଜନ୍ମାଇଲେ
ପମ୍ପାସରେ କୋକ ଶୋକକାରକ ହୋଇଲେ ଯେ ।
ମିତ୍ରବଂଶୀ ମିତ୍ର ବସି ମିତ୍ରପୁତ୍ର ସଙ୍ଗେ
ଭେଦ ଶାଳ ଦୁନ୍ଦୁଭି ଅସ୍ଥିକି ଗଲେ ରଙ୍ଗେ ଯେ । ୨୫ ।

ଶାଖାମୃଗରାଜ ମୃଗରାଜ କୋଟି ବଳ
ଶର ଶରଭରେ କଲେ ବନାଶ ଚପଳ ସେ ।
ମାଲ୍ୟବନ୍ତ ଧରଣୀଧରରେ ପୂର ରଚ
ରଘୁବୀର ବରନ୍ଧେ ବରଷାକାଳ ବଞ୍ଚ ସେ ।
କୁକ୍‌କୁଟକୁ ମୁକୁଟ ସେ ଗିରିକୂଟେ ଦେଇ
ଲଭ ବଲ୍ଲଭୀ-ଉଦନ୍ତ ଦୂତ ପଠିଅଇ ସେ । ୧୬ ।
ଜଳେ ସେତୁ କଲେ ଶିଳେ ନଳେ ଦେଇ ଯଶ
ଲଙ୍କା ବେଢ଼ି ଶଙ୍କା କରାଇଲେ ଦୈତ୍ୟବଂଶ ସେ ।
ବିଷଧର ପାଶ ହାସ ନାଶ କଲା ବାଣ
ଅନକଜୀ ଅନେକ ହୋଇଲେ ରଣେ ନାଶ ସେ ।
ଘଟକର୍ଣ୍ଣ ଘଟତ୍ୟାଗ ଅତିକାୟ କ୍ଷୟ
ପୁରୁହୂତଜିତ ହତ ବ୍ରହ୍ମାସ୍ତ୍ର ଉଦୟ ସେ । ୧୭ ।
ହନୁମାନ ଗନ୍ଧମାଦନ ଗମନ ଲୀଳା
ଭରତ ଉଦନ୍ତପ୍ରାପ୍ତ ଲକ୍ଷ୍ମଣ ଜୀଇଲା ସେ ।
ଶ୍ରୀରାମଚନ୍ଦ୍ର ନରେନ୍ଦ୍ର ଶର ସର୍ପ ନେଇ
ଲଙ୍କାପତି ଅଙ୍କପେଟୀ ଭିତରେ ପୂରାଇ ସେ ।
ଅଭୀଷଣ ବିଭୀଷଣେ ଅଭିଷେକ କରି
ବଇଦେହୀ ଦାହି ଅନଳରେ ହେମ ପରି ସେ ।୧୮।
ପୁଷ୍ପକରେ ପୁଷ୍କରେ ସବଳେ କଲେ ଗତି
ଯୋଦ୍ଧାବର ଅଯୋଧ୍ୟାରେ ହୋଇଲେ ନୃପତି ସେ
ଦେଖାଉଁ ଦେଖାଉଁ ରାମାପୁଣ ମହୋତ୍ସବ ।
ଚନ୍ଦ୍ର ବଦନୀକି ଦେଖାଇଲା ଅନ୍ୟ ଭାବ ସେ ।
କର୍ଣ୍ଣାଟ ରାଜନନ୍ଦନ ରାମ ଅଗେ ଉଭା
ବିଶ୍ୱମ୍ଭର ଆଗେ ବିଶ୍ୱକେତୁ ଯଥା ଶୋଭା ସେ ।୧୯।

କୁମାରୀଙ୍କି ଶୁଭୁଛୁ ଏମନ୍ତ ଜଣାଉଛୁ
ଆନ ବରେ ମୋର ପ୍ରୟୋଜନ ନାହିଁ କିଛୁ ଯେ ।
ହେ ରାମ ଶ୍ୟାମସୁନ୍ଦର ଅଛ ଦଉ କର
ସୁଗ୍ରୀବଙ୍କୁ ତାରା ବିଭୀଷଣେ ମନ୍ଦୋଦରୀ ଯେ ।
ଲାବଣ୍ୟବନ୍ତୀ ଯୁବତୀ ଶିରୋମଣି ମୋର
ମନୋହାରୀ ହୋଇବ ଏମନ୍ତ କୃପା କର ହେ ।୩୦।

---

# କଳାମାଣିକ

ଅଭିମନ୍ୟୁ ସାମନ୍ତସିଂହାର



ଧୀରେ ଯେନ କାନନରେ କୃଷ୍ଣ ବିଳମ୍ବିତ,
ବାତ୍ସଲ୍ୟ-ମମତା ଯେନ ସ୍ୱଚ୍ଛନ୍ଦ ମାତ ।
କଳାମାଣିକ ରେ । ୧ ।
ନିଧନ ସଙ୍ଖାଳ ମୋର ଦରିଦ୍ର ପସରା,
ଅନ୍ଧର ଲଉଡ଼ି ବାବୁ ହୃଦ-ରତ୍ନହାର ।
କଳାମାଣିକ ରେ । ୨ ।
ମୋ ଜୀବ-ଜୀବନ ତୁହି ନୟନ-ପ୍ରତିମା,
ତୋତେ କି ପାସୋରି ହେବ ମୋର ସୁଖସୀମା ।
କଳାମାଣିକ ରେ । ୩ ।
ଡରୁଥାଉ ଅନ୍ଧାରକୁ ରଖିଯାଉ ଗୋରୁ,
ଜନକ ଜନନୀ ସୁଖ କାହିଁ ପାଇଁ ସାରୁ ।
କଳାମାଣିକ ରେ । ୪ ।
ବୃଦ୍ଧକାଳେ ତୁ ମୋହର ଏକଇ ନନ୍ଦନ,
ହୃଦତାପ ବିନାଶନେ ତୁ ହରି ଚନ୍ଦନ ।
କଳାମାଣିକ ରେ । ୫ ।
ଗୋଟିକା ଅଧାମ ସର ନ ରୁଚଇ ତୋତେ,
ନାଚ ଲଞ୍ଜ ମାଗୁଥାଉ ଲବଣୀ କେମନ୍ତେ ।
କଳାମାଣିକ ରେ । ୬ ।

ତୋଳ ମୁଁ ଧଇଲେ ଗୋଳ ହୋଇଯାଉ ତୁହି,
ତୋ ଦୁର୍ବଳ ଦେଖି କାହ୍ନିଁ ପଶିବଇ ମୁହିଁ ।
କଳାମାଣିକ ରେ । ୭ ।

ଡାକମା ଲେଖାନ୍ତ ବୋଲି ଡରୁଥାଇଁ ମନେ,
ବାର ବାର ବାରୁଥାଇଁ ଯିବା ପାଇଁ ବନେ ।
କଳାମାଣିକ ରେ । ୮ ।

ନିଶାଚର ମାଡବାର ଶୁଭୁଛି ଶ୍ରୁତିକ,
ମୁଁ ଡଙ୍କୁଣୀ ଛୁଡ଼ଦେଲ ବନକୁ କାହିଁକ ?
କଳାମାଣିକ ରେ । ୯ ।

ଖାଲ ବହୁଥିବ ଅଙ୍ଗେ ଲାଗି ଖାଞ୍ଜି ଖରା,
ଶ୍ରମ ପାଇ ତରୁତଳେ ବସିଥିବୁ ପରା ।
କଳାମାଣିକ ରେ । ୧୦ ।

ନେଲୁ ନାହିଁ କାହିଁ ପାଇଁ ତୋ କଠାଉ ଛତା,
ବନେ କଣ୍ଟା ଲାଗି ହୋଏ ମୃଦୁ ପାଦ ଫଟା ।
କଳାମାଣିକ ରେ । ୧୧ ।

କାନ ଡେରିଥାଏ ଏକା ତୋ ବେଣୁଗୀତକୁ,
ଆଜି କପାଁ ଶୁଭୁ ନାହିଁ ଭାବୁଛି ମନକୁ ।
କଳାମାଣିକ ରେ । ୧୨ ।

ତୋ ଠାରୁ ଅଧିକ ବାଇ ତୋର ବଡ଼ଭାଇ,
ବୋଧ କରିଗଲା ନାହିଁ କାହିଁକି ରଖାଇ ।
କଳାମାଣିକ ରେ । ୧୩ ।

ତୋ ମାଧୁରୀ ସୁରୁଭୁରୀ ଦେଖି ମୁହିଁ ସୁଖୀ,
ଅନ୍ଧ କରି ଗଲୁ କଳା ମମତା ନ ରଖି ।
କଳାମାଣିକ ରେ । ୧୪ ।

ଘୁଇଜ ଅଜାଇ ଘୁଞ୍ଚ ଫୁଲ୍‌ଇ ତ୍ରିଭଙ୍ଗେ,
ମୁରଲୀ ବଜାଉ ଥାଉ କି ସ୍ବଚ୍ଛନ୍ଦ ରଙ୍ଗେ ।
କଳାମାଣିକ ରେ । ୧୫ ।

କୋଳ ପାଇଁ ଅଳି କର ଗଡ଼ୁ ତୁ ଧୂଳିରେ,
ବେଶ ହୋଇଥାଉ ରସି କୁସୁମମାଳରେ ।
କଳାମାଣିକ ରେ । ୧୬ ।

ନଟବର ପଶ୍ରପାଟୀ ବେଶ ମନୋହର,
ରଙ୍ଗିମା ଅଧରେ ହାସ କି ଜାନ୍ତ ସୁନ୍ଦର !
କଳାମାଣିକ ରେ । ୧୭ ।

ନୟନ ସୁନ୍ଦର ମାନେ ଭ୍ରୂଲତା ନାଟକୁ,
ଅଳକା ଆବୃତ୍ତ ଶୋଭା ଲଲାଟ ପଟକୁ ।
କଳାମାଣିକ ରେ । ୧୮ ।

ନାକେ କାବ୍ୟତାସ ମୋତିବସଣୀ କି ଶୋଭା,
ମୋ ଆଖି ଦେଖିବା ପାଇଁ ନିରବଧି ଲୋଭା ।
କଳାମାଣିକ ରେ । ୧୯ ।

ମକର କୁଣ୍ଡଳ ଯୁଗ୍ମ ଆନ୍ଦୋଳେ ଗଣ୍ଡରେ,
ଦେଖି ଆନନ୍ଦରେ ଭାଷା ନ ଅସେ ତୁଣ୍ଡରେ ।
କଳାମାଣିକ ରେ । ୨୦ ।

ଗୁଞ୍ଜବେଢ଼ା ବାଙ୍କଚୂଡ଼ା ଖୋଷା ଜାମୁଡାଳ,
କି ସୁନ୍ଦର ଦିଶୁଥାଇ ଆସୁ ଢଳ ଢଳ ।
କଳାମାଣିକ ରେ । ୨୧ ।

କେତେଡ଼େ ସ୍କନ୍ଧ କେକପୁଚ୍ଛ ସୁଗୁଞ୍ଜର ପାଟି,
ଆସିବ କାହା ପାଟିକି ତେତେ ପଶ୍ରପାଟୀ ।
କଳାମାଣିକ ରେ । ୨୨ ।

କସ୍ତୁରୀ ତିଳକ ନାସେ ଭାଲେ ଗୋରଚନା,
ଗାଲରେ ଚନ୍ଦନପାଟି ମନବଶ ପିନା ।
କଳାମାଣିକ ରେ । ୨୩ ।

ରଙ୍ଗମାଟି କ ରଙ୍ଗରେ ହୃଦରେ ରଞ୍ଜିତ,
କଉସ୍ତୁଭ ବନମାଳ ସୁଷମା ରଞ୍ଜିତ ।
କଳାମାଣିକ ରେ । ୨୪ ।

କାଞ୍ଚଣ କଙ୍କଣ କରେ କଟିରେ କିଙ୍କିଣୀ,
ନୂପୁର ଶବଦ ମୋର ମନ ନଏ କଣି ।
କଳାମାଣିକ ରେ । ୨୫ ।

ସୁନ୍ଦର ସୁନ୍ଦର ଭଙ୍ଗୀ ନ ଦେଖି ତୋହର,
ବାଇବୁଦ୍ଧି ହୋଇଲାଣି ଆସି ତ ମୋହର ।
କଳାମାଣିକ ରେ । ୨୬ ।

କଣ୍ଠ କରିଥିଲୁ ପର କାହିଁକ ନଇଲୁ,
କାହା ସଙ୍ଗତରେ ଅବା ପୁଣି କଳ କଲୁ ।
କଳାମାଣିକ ରେ । ୨୭ ।

କ ଦୂର ବନକୁ ଗଲୁ ତଥ୍ୟ ନ ଜାଣିଲ,
ମୁଁ ପାପିଷ୍ଠା କାହିଁପାଇଁ ତୋ ସଙ୍ଗେ ନ ଗଲ ।
କଳାମାଣିକ ରେ । ୨୮ ।

ରବକର ଖୁହୁଁ ଅଛୁ କ୍ଷତମୃଗ ପରି,
ଦିନ ସରୁନାହିଁ ଲବ ହେଲା ଯୁଗ ସରି ।
କଳାମାଣିକ ରେ । ୨୯ ।

କେ ଯାଇ କହନ୍ତା ତୋତେ ମୋହର ବେଦନା,
ଅବଶ୍ୟ ହୁଅନ୍ତୁ ଭୁଲ୍ଲ ମାତା-ସ୍ନେହ ଧେନା ।
କଳାମାଣିକ ରେ । ୩୦ ।

ତଉତ୍‌ତ୍ରିବ କ ବନେ ହେଉଛି ଅଙ୍କୁର,
ପୟୋଧରୁ କ୍ଷୀର ସ୍ରବ ପଡ଼େ ଧାର ଧାର ।
କଳାମାଣିକ ରେ । ୩୧ ।
ମନ ଛନ୍ନ ଛନ୍ନ ବନ ନେସୁଁ ନ ରହିଲା,
ତୋ ଅଇଲା ପରା ଘୁଇ ମୋତେ ପ୍ରତେ ହେଲା ।
କଳାମାଣିକ ରେ । ୩୨ ।
ଖଳମାନେ ସୁତମାନେ ଚହିଲା ନସ୍ୱନ,
କୁପୂର ଭାଷାରେ ମୋର ବଧୀ ହେଲା କାନ ।
କଳାମାଣିକ ରେ । ୩୩ ।
ଅନେକ ଆଦେଁ ତୋତେ ରଖିଲେ ଅମ୍ବିକା,
ନାମ ଦେଇଅଛି କାହ୍ନୁ କହ୍ନା କଣାବକା ।
କଳାମାଣିକ ରେ । ୩୪ ।
ଅପତ୍ୟାଣି ବୋଲ ମୁଁ ବନ୍ଧିଲି ନାକ କାନ,
ଖଞ୍ଜିଲି ବସଣୀ ବାଳ ଲୋକେନେ ଶୋଭନ ।
କଳାମାଣିକ ରେ । ୩୫ ।
ମନ୍ଦଦୃଷ୍ଟି ନ ବାଧିବ ବପୁରେ ମୋହର,
କଳା ବନ୍ଦୁ ଦେଇଥାଇଁ କପାଳେ ତୋହର ।
କଳାମାଣିକ ରେ । ୩୬ ।
ଗୋରଜ ଲେପଇଁ ଅଙ୍ଗେ ଆପଦ ହରଣେ,
ପାଦରଜ ଦେଉଥାନ୍ତି ବୃଦ୍ଧ ଗୋପୀଗଣେ ।
କଳାମାଣିକ ରେ । ୩୭ ।
ଭଙ୍ଗ କାନ୍ଥ ନ ଦଅଇଁ ଡାକଣୀକ ଡର,
ତୁଚ୍ଛ ବେଶ କରିଥାଇ ଲୋଭକୁ ନ ବାର ।
କଳାମାଣିକ ରେ । ୩୮ ।

କୋଳେ ଶୋଇଥାଉ ନିଦ ଭାଙ୍ଗିଗଲେ ତୋର,
ଚମକି ମୋ ଗଳା ଛନ୍ଦି ଡାକୁ ମାତା ଗିର ।
କଳାମାଣିକ ରେ । ୩୯ ।

ଏମନ୍ତ ନନ୍ଦନ ପୁଣି ବନବାସୀ ହେବ,
ଜନନୀ ଜୀବନ ଧରି କିପରି ରହିବ ।
କଳାମାଣିକ ରେ । ୪୦ ।

କାହାକୁ କି ସୁତ ଦେଇନାହିଁ ରେ ଦଇବ,
ତୋପରି ଅବୁଝା ପୁଣି କେ କାହିଁକି ହେବ ।
କଳାମାଣିକ ରେ । ୪୧ ।

ବିଭ୍ରମରେ ସନ୍ନିକଟ ଦୂତ ନ ଜାଣିଲେ,
ଆସ ବାପ ଭାଇ ଧନ ଗୁଇକ ବୋଇଲେ ।
କଳାମାଣିକ ରେ । ୪୨ ।

ଅଗ୍ରତେ ନୟନ ଦେଲେ ଦଉଡ଼ି ଦାଣ୍ଡକୁ,
ହୃଦେ କର ମାରି ସମ୍ଭ ନ କଲେ ପିଣ୍ଡକୁ ।
କଳାମାଣିକ ରେ । ୪୩ ।

ରୋହିଣୀ ବାରିଲେ ଆସି କଷ୍ଟ ବୋଧ କରି,
ଧୀରରେ ଘେନ ଏ ବାତ୍ସଲ୍ୟ ବଚନ ମାଧୁରୀ ।
କଳାମାଣିକ ରେ । ୪୪ ।

ସାମନ୍ତସିଂହାର ଦୀନ କରନ୍ତି କାମନା,
କୃଷ୍ଣ ପ୍ରେମରସ ବିନା ନ ହେଉ ଭାବନା ।
କଳାମାଣିକ ରେ । ୪୫ ।

# କାହାକୁ କହିବା

କବିସୂର୍ଯ୍ୟ ବଳଦେବ ରଥ



କାହାକୁ କହିବା,
କପାଳରେ ସିନା କର ଚାଡ଼ିବା । ଘୋଷା ।
ଭଜିଥିବ ଶିବ କଳପଲତା
କାଳେ ସେ ହୋଇଲେ ଅପରାଜିତା,
କରି ଗୋଦାବରୀ ନିକଟେ ବସା
କାଳ-ଦେବତା ଯେବେ ହେବ ତୃଷା । ୧ ।
ନଥର ପରୀକ୍ଷିତ ହୀରାମଣି
ପଥରୁ ଯେତେ ହେବ ଊଣା ପୁଣି,
କରି ହାଜର ଥିବ ପଦ୍ମନିଧି
ଜନମିବ ଯେବେ ଯାଚକ ବୁଦ୍ଧି । ୨ ।
ପିନ୍ଧିଥିବ ଜାମା ନମାଗୁଡ଼ିକ
ରୂପତ ଅଙ୍ଗ ଦିଶିଲେ ଝଲକ,
ହରିଭଜନ ମାଳା ଥିବ କରେ
ଧରିନେବ ଯେବେ ଯମ କିଙ୍କରେ । ୩ ।
ସ୍ୱପନକୁ ଥିବ ହଂସୁଳି ଭୁଲି
ନିଜ ଅଙ୍ଗରୁ ଜନମିଲେ ଧୂଳି,
ମାଧୁର୍ଯ୍ୟ ଲୋଭରେ ଖାଇଲେ ପିଠା
କଣ୍ଠ ଉପକଣ୍ଠେ ଲଗିଲେ ଚିଠା । ୪ ।

ଜାଳିବା ପାଇଁ ପିଇବା ପୀୟୂଷ
ପଣ୍ଡପାକେ ଯେବେ ହେବ ସେ ବଷ,
କୁନ୍ଦନ ଯେବେ ପାଲଟିବ ରଙ୍ଗ
କଣ୍ଠିପଦ୍ମ ଯେବେ ହେବ ଭୁଜଙ୍ଗ । ୫ ।
କେତକୀରୁ ସମ୍ଭବିଲେ ଦୁର୍ବାସ
ଶିରଗଣ୍ଡରୁ ଜନ୍ମିଲେ କୁଳଣ,
ନିଜ ନିଶ୍ୱାସରେ ପଡ଼ିଲେ ତଳ
ଜଠରାନଳେ ଦେହ ଗଲେ ଜଳ । ୬ ।
ସକଳ ସଉଭାଗ୍ୟ ଅଭିଳାଷେ
ଅନୁସର ସୁର-ସୁରଭି ପାଶେ,
ଦୋହନ କାଳେ ଦୁଧରୁ ତାହାର
ଧବଳ ହୋଇଲେ ବାହାର । । ୭ ।
ପିଞ୍ଜରମଣ୍ଡନ ପଢ଼ା ଶାରିକା
ପଢ଼ା ଘୁଡ଼କଲେ ମଣ୍ଡୁକଉକା,
କପିତ୍ଥ ଫଳଲେ ରସାଳ ଲତା
ଅଶୁଭ ପାଞ୍ଚିଲେ ଇଷ୍ଟଦେବତା । ୮ ।
ଜ୍ୟୋତିଷ୍ମନ୍ତ ତାର ନୟନେ ଥିବ
ସମୀପ ଦୀପ ଯେବେ ନ ଦିଶିବ,
ଘନସାର ସାର ସଙ୍ଗମ କ୍ଷଣେ
ଆନ୍ଧ୍ୟ ଯେବେ ଜନମିବ ଲକ୍ଷଣେ । ୯ ।
ଦୂର ହୋଇବାକୁ ଦୁରିତ ବ୍ୟୂହ
ଗଙ୍ଗା ପ୍ରବାହଜଳ ଅବଗାହ,
ନିତ୍ୟ ନିବାସ କରିଥିବ କାଶୀ
ଆସି ଗ୍ରାସି ଦେଲେ ପାତକରାଶି । ୧୦ ।

ହାଣ୍ଡ ବିଚରଣ କରି ଯାଚକେ
ଜାତି କୃପଣ ବୋଲାଇଲେ ଲୋକେ,
ପାପିତ୍ୱଧ୍ୱଂସୀ ଶ୍ରୀମହାପ୍ରସାଦେ
ଜାତି ବିଧ୍ୱଂସ ହେଲେ ପରମାଦେ । ୧୧ ।
ଅବଲମ୍ବି କରି ଗରୁଡ଼ ମୀଡ଼
ଟିଟ୍ଟିଭରୁ ହେଲେ ଉଦଧି ନିବାଡ଼,
ହରି ଦଣ୍ଡ ମଧ୍ୟ କରି ଶରଣ
ଶଣିଁ ସକାଶୁଁ ଲଭିଲେ ମରଣ । ୧୨ ।
ସିନ୍ଧୁରେ ପଶି ନ ଛିନ୍ତିଲେ ପାଦ
ସାଯୁଜ୍ୟ ମୋକ୍ଷରେ ଥିଲେ ବିପଦ,
ମାଜି ନିର୍ମଳ ମୁକୁରକୁ ସ୍ୱହିଁ
ପ୍ରତିବିମ୍ବ ଯେବେ ଦିଶିବ ନାହିଁ । ୧୩ ।
ଦ୍ରବ୍ୟରୁ ଯେବେ ଗୁଣର ବିଚ୍ଛେଦ
କାମକାଣ୍ଡରେ ହେଲେ ଶିରଚ୍ଛେଦ,
ସେବିକା ସଂଜୀବନୀ ମହୌଷଧ
ନୋହିବ ଯେବେ ଆମୟ ନିଷେଧ । ୧୪ ।
ହିମ ଗିରି-ଦରୀ କତି ଆଶ୍ରୟ
ହେଲେ ନିଦାଘ ଉଦୟ ଅତିଶୟ,
ପଣ୍ଡିତମଣ୍ଡଳୀରେ କରି ସ୍ତୁତି
ଜଣା ନୋହିଲେ ବଚନ ସଙ୍ଗତି । ୧୫ ।
ଜାଣି ବେଦବିଦ୍ୟା ତତ୍ତ୍ୱସାରକୁ
ମୂରୁଖ ବୋଲାଇଲେ ଆଖରକୁ,
ପରଶୁରାମକୁ କରିବା ଗୁରୁ
ପଳାଇବା ଯେବେ ଅରି ଆଗରୁ । ୧୬ ।

ବୀଣାବାଦ୍ୟ ଶିକ୍ଷା ଦେଇ ଅଶେଷେ
ଅକାଳକୁଷ୍ମାଣ୍ଡ ବୋଲାଇଲେ ଶେଷେ,
ଧରଣୀଦେବଙ୍କ ଚରଣ ରଜ
ଶିରେ ଘେନବା ଯେବେ ହେବ ଲଜ ।୧୭।
ଶରୀର ଖେଦ ହୋଇବାକୁ ଶାନ୍ତ
ଚାଳିବା ମନ୍ଦମନ୍ଦ ତାଳବୃନ୍ତ,
ତହୁଁ ନ ଜନମି ମୃଦୁ ଅନଳ
ସମ୍ଭବିବ ଯେବେ ପ୍ରଳୟାନଳ ।୧୮।
କହଇ ଜଳନ୍ତର ପୁରନ୍ଦର
ଶୋଭା ନିମନ୍ତେ ବହ୍ନି ଅଳଙ୍କାର,
ତହୁଁ ସୁନ୍ଦର ଭାବ ନ ଦିଶିବ
ପିଶାଚ ପରି ଯେବେ ଆଭାସିବ ।
କାହାକୁ କହିବା,
କପାଳରେ ଥିନା କର ତାଡ଼ିବା ।୧୯।

---

# କଂସର ଚଟାଉ

ଭକ୍ତଚରଣ ଦାସ

ଲେଖିଅଛୁ କଂସ ହୋଇ ମହାରୋଷ,
ଅହେ ଗୋପପତି ନନ୍ଦ ।
ଆଜ୍ଞା ପ୍ରମାଣେ ତତ୍‌କାଳେ ଆସିବୁ,
ନୋହିଲେ ଛେଦିବି କନ୍ଧ ।୧।
ଜାଣୁ ତ ମୋହର ବଳବୀର୍ଯ୍ୟ ଯେତେ,
ଅଇରି କୁଳକୁ କେତୁ ।
ପ୍ରତିଜ୍ଞାରେ ରଣ ତେଜ ରଣସ୍ଥଳ-
ପୁଷେ ହେଁ ଲଭନ୍ତି ମୃତ୍ୟୁ ।୨।
କୋପ କଲେ ମହୀ ଦୋହଲି ଉଠଇ,
ମେରୁ ହୋଏ ଥରହର ।
ବାଣ ଦେଲେ ଜନ୍ତୁ-ପତି ଭସ୍ମ କରେ,
ଆଉମାନେ କେତେ ଛାର ।୩।
ବଧାଘାତେ ଶତ-କୂଟ କୁଧରକୁ
କରି ପାରଇ ମୁଁ ଚୂନା ।
ଅଇରି ଉରସଳ ବାନା ବହଇ,
ଶରଣକୁ ବଜ୍ରସେନ୍ଧା ।୪।
ଦାନପଣକୁ ସୁନାସୀର ପରାଏ,
ଗମ୍ଭୀରପଣେ ଜଳଧି ।
ପଣ୍ଡିତପଣେ ଦେବଗୁରୁ ହାରନ୍ତି,
ବେଦବେଦାନ୍ତରେ ବିଧି ।୫।

ଧାର୍ମ୍ମିକପଣେ କେହ୍ବ ସମ ନୁହଁନ୍ତି,
ପରଜା ପାଳନେ ତାତ ।
ମୋର ଦେଶରେ ଭସ୍ମ କର ପ୍ରଚଣ୍ଡ
ହୋଇ ନ ବହଇ ବାତ । ୬ ।
ଅଗ୍ନି-ଦେବତା ଶିଖାମାନ ନଜନ
ଦେଖି ମୋର ତେଜବଳ ।
ସୁଜନ ରଖି ଦୁର୍ଜ୍ଜନଙ୍କୁ ମାରଇ,
ଏ କଥା ମୋହର ମୂଳ ।୭।
ଗଡ଼ ଦେଖି ବଡ଼ ଷଣ୍ଢୀମାନେ ଆଡ଼
ହୁଅନ୍ତି ବହୁତ ଦୂରୁ ।
କଟକାଇ କଲେ ଅମରେ ପଳାଇ
ଯାଆନ୍ତି ଅମର ପୁରୁ । ୮ ।
ଯାଦବକୁଳ କୁମୁଦବନ ପ୍ରାଏ
ମୁଁ ତହିଁ କ ନଶାମଣି ।
ସୁନ୍ଦରପଣେ କାମ ସର ନୁହଁଇ
ସହିବାପଣେ ଧରଣୀ । ୯ ।
ଯୁଦ୍ଧ ନ କର ଯୋଦ୍ଧାମାନ ଜଣିଲ
ବ୍ରହ୍ମାଣ୍ଡ ହୋଇଲ ମୋର ।
ଏହ୍ବଠାରେ ଥାଇ ଦର୍ଶନେ ନ ଆସୁ,
ଏତେ ଗାରିମା ତୋହର । ୧୦ ।
ରଡ଼ ଗୋଟାକେ ସର୍ବଜନ୍ତୁ ମରବେ
ତନପୁରେ ଥିବେ ଯେତେ ।
ଦୟାକର ତାଙ୍କୁ ଶରଣ ରଖିଲ
ଯେଣୁ ଆଶ୍ରେ କଲେ ମୋତେ । ୧୧ ।

ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ସଙ୍ଗେ ଅଷ୍ଟଭୁଜ
ସମସ୍ତେ ମୋହର ବଶ ।
ମହାଦୁଷ୍ଟମାନେ ଗୁଡ଼ ପଳାଇଲେ
ଶୁଣି ମୋର ଘୋରଘୋଷ । ୧୨ ।
ଘୁର ଗଉଡ଼ ତୁ ଅଟୁ ଏଡ଼େ ମୂଢ଼
ନ ଦେଉ ମୋହର କର ।
ଦେବ ଯେବେ ଧାପ ରଖିବ କେ ବାପ
ଅନଳେ ଦହିବ ପୁର । ୧୩ ।
ଶଶୁର ଯା'ର ଜରାସନ୍ଧ ଦଇତ,
ସଖା ଯା'ର ବୀର କେଶୀ ।
ଏକା ନିମେଷକେ ଚରାଚର ମଧ୍ୟ
ପକାଇ ପାରଇ ଧ୍ୱଂସି । ୧୪ ।
ଶୂର ନାରକା, ବ୍ୟୋମା, ଅଘା, ପ୍ରଲମ୍ବା,
କଦମ୍ବା ଦୁର୍ବଦ ବୀର ।
ଚାଣୁର, ମୁଷ୍ଟିକ, ଶଲ୍ୟ ଆଦି ମାନେ
ଅଛନ୍ତି ମୋ ହନ୍ତକାର । ୧୫ ।
କେବଳ ଶିଖଣ୍ଡ-କୁସୁମକୁ ମହା-
ପ୍ରଳୟ ବରଷା ଲୋଡ଼ ।
ସେହି ପ୍ରାୟେ ମୁହିଁ, ସେହି ପ୍ରାଏ ତୁହି
ଶିଶିରେ ଚ ପିବୁ ପଡ଼ି । ୧୬ ।
ଏବେ ମୋର ଧନୁ-ଉତ୍ସବ ହେଉଛି,
ସମ୍ଭାର ଘେନାଇ ଆସ ।
ସମସ୍ତ ଦୋଷ ତୋର କ୍ଷମା ହୋଇଲା
ମନେ ନ କରିବୁ ତ୍ରାସ । ୧୭ ।

ସମ୍ଭାର ଦଧି ଶତେ ଭାର ଘେନାଇ
ଗୋଷ୍ଠିକା ଅଧାମ ଆନ୍ଧ ।
ସଙ୍ଗେ ଗୋପ ଦଶ ପଞ୍ଚାଶ ଆଣିବୁ
କରିବେ ସେ ଯାଶାବଧି । ୧୮ ।

ରାମକୃଷ୍ଣ ବେନ ଭାଇଙ୍କି ଅକ୍ରୂର
ସଙ୍ଗେ ସଙ୍ଗ କରିଦେବୁ ।
କେଡ଼େ ହେଲେଣି ତୋର ବେନ ନନ୍ଦନ
ତାହାଙ୍କୁ ଆମ୍ଭେ ଦେଖିବୁ । ୧୯ ।

ସେହୁ ଦେଖିବେ ମହାଧନୁ ଉତ୍ସବ,
ଶୁଭକଥା ସିନା ତୋତେ ।
ବଡ଼ଲୋକ ସଙ୍ଗେ ସଙ୍ଗ ହୋଇଯିବେ
ଭୟ ନ ରହିବ ଚିତ୍ତେ । ୨୦ ।

ବୃଦ୍ଧ ଶରୀର, କେତେଦିନ ବଞ୍ଚିବୁ,
ମିଥ୍ୟା ମାଟି କଳେବର ।
ତୋହର ଥାଉଁ ଥାଉଁ କୁମର ବେନଙ୍କି
ଆମ୍ଭର ପଦରେ କର । ୨୧ ।

ଶାଢ଼ୀ ବନ୍ଧାଇ ରାଜନପଣି ଦେଇ
ସୁଖେ ଗୃହେ ବସିଥାଅ ।
ଆମ୍ଭର ଯେତେ ହାନିଲାଭ ହୋଇବ
କରିବେ ତୋହର ପୁଅ । ୨୨ ।

ନଶି ପାହିଲେ ଧନୁପୂଜା ହୋଇବ,
ଅଳସ ନ କର ଆସ ।
ଏମନ୍ତ ବୋଲି ଚିଠାଉ ଲେଖିଅଛି,
ପଢ଼ି ନନ୍ଦ ହେଲେ ତୋଷ । ୨୩ ।

ବପୁସ୍ଥ ଚିତ୍ତରେ ହୃଦସ୍ଥ ଭିତରେ,
କଲା ମହାଘୋର ଭ୍ରାନ୍ତି ।
ଯହୁଁ ଶୁଣିଲା ମଥୁରା ଯିବେ ଦୂତ
ସଙ୍ଗେ ରାମ ଶିଖିପଚ୍ଛ । ୨୪ ।
ପରିଜନ ରାଇ ବୋଲେ ଗୋପସାଇଁ
ଗୋପରେ ଘୋଷଣା ଦିଅ ।
ନଶି ପାହିଲେ ମଥୁରାପୁର ଯିବେ,
ସମ୍ଭାର ସଜାଡ଼ି ଥାଅ । ୨୫ ।
ଏତେକ ଭାଷି ଅକ୍ରୂରକୁ ଚରମ୍ଭ
କରଇ ବରଜ ରାଜା ।
ବୋଲେ ବଇରାଗୀ ଭକତ ଚରଣ
ଗୋପରେ ବଜାଇ ବାଜା । ୨୬ ।



# ବାଲ୍ୟଲୀଳା

ଗୋପାଳକୃଷ୍ଣ ପଟ୍ଟନାୟକ



ବ୍ରଜକୁ ଚୋର ଆସିଛି ଯେଣ ନେବ
ଶୁଅ ତୁନ ହୋଇ ରେ ।
ରଙ୍କର ଧନ ମୋ ଗୋକୁଳ-ଚନ୍ଦ୍ରମା
ନଣି ପାଇ ନାହିଁ ରେ । ୧ ।
ଘାଣ୍ଡ ଗୋଠାସାକ ମାଡ଼ିଲୁ ନାଠରେ
ପଲକ ନ ପକାଇ ରେ ।
ଗ୍ରାମ ନଶବଦ ହେଲାନ କି ଚୋଟେ
ନଦ୍ରା ଆସୁ ନାହିଁ ରେ । ୨ ।
କେ ଶିଖାଇଦେଲା ଡୋଳା ଡାଳବାର
ଚାଳ ଉଳୁଠାଇ ରେ ।
ପାଦ ବଥାଇବ ପଣ୍ଟ ଆଜର କ
ନାଠ ଅଣ୍ଟି ନାହିଁ ରେ । ୩ ।
ନର୍ମ୍ମଂଚନ ଯିବ କେତେ ଖାଲ ବନ୍ଧ
ଗଲା କ୍ଷୁଧା ପାଇ ରେ ।
ଆସ ଆସ ସ୍ତନ୍ୟ ପାନ କରାଇବ
ବାବୁ କାଖିଆଇ ରେ । ୪ ।
ପଶୁପେନ୍ଦ୍ର କୁଳ-ପ୍ରଦୀପ ତୁ ଦେଖ
ଖେଳ ଗୁଡ଼ି ଦେଇ ରେ ।
କେତେ ବେଳ ହେଲା ଶୟନ କଲାଣି
ବଳରାମ ଯାଇ ରେ । ୫ ।

ଚୁମ୍ବନ ଶିରେ ଦେଇ  ନେଲେ ଯଶୋଦା
ହୃଦରେ  ଲଗାଇ  ଯେ ।
କର୍ଣ୍ଣମୂଳେ ଧୀରେ ଧୀରେ କର ମାରି
ଦେଲେ ପଦ୍ମଫୁଙ୍କାଇ ଯେ । ୭ ।
ନମ୍ବପର୍ଣ୍ଣ ହରିଦ୍ରା ଚୂର୍ଣ୍ଣ ଘଷନ୍ତ
ଅନଳେ  ପକାଇ  ଯେ ।
ଗୋପାଳକୃଷ୍ଣ କହଇ ଧୂପ ଦେଲେ
ଧନସ୍ଥିକା ନେଇ ଯେ । ୭ ।

# ଆହେ ନୀଳ ଶଇଳ

ସାଲବେଗ



ଆହେ ନୀଳ ଶଇଳ ପ୍ରବଳ ମତ୍ତ ବାରଣ,
ମୋ ଆରତ-ନଳିନୀ-ବନକୁ କର ଦଳନ ।

ଗଜରାଜ ଚିନ୍ତାକଲା ଥାଇଁ ଘୋର ଜଳେଣ,
ଚକ୍ର ପେଷି ନକ୍ର ନାଶି ଉଦ୍ଧରିଲ ଆପଣ ।

ଘୋର ବନେ ମୃଗୁଣୀକି ପଡ଼ିଥିଲା କଷଣ,
କେତେ ବଡ଼ ବିପତ୍ତିରୁ କରିଅଛ ତାରଣ ।

କୁରୁସଭା ତଳେ ଶୁଣି ଦ୍ରୌପଦୀର ଜଣାଣ,
କୋଟି ବସ୍ତ୍ର ଦେଇ ହେଲେ ଲଜ୍ଜା କଲ ବାରଣ ।

ରାବଣର ଭାଇ ବିଭୀଷଣ ଗଲା ଶରଣ,
ଶରଣ ସମ୍ଭାଳି ତାକୁ ଲଙ୍କେ କଲ ରାଜନ ।

ପ୍ରହଲ୍ଲାଦ ପିତା ସେ ଯେ ବଡ଼ ଦୁଷ୍ଟ ଦାରୁଣ,
ସ୍ତମ୍ଭରୁ ବାହାରି ତାକୁ ବିଦାରିଲ ତକ୍ଷଣ ।

କହେ ସାଲବେଗ ହୀନ ଜାତିରେ ମୁଁ ଯବନ,
ଶ୍ରୀରଙ୍ଗ ଚରଣ ତଳେ କରୁଅଛି ଜଣାଣ ।

---

# ସୀତା ଠାବ

ବୈଦ୍ୟନାଥ ଖୁଣ୍ଟିଆ



ଶିଂଶୁପା ବୃକ୍ଷର ଡାଳେ, ହନୁ ମନେ ମନେ ଭଲେ,
ନିଶ୍ଚୟ ଜାନକୀ ଜନକନନ୍ଦିନୀ ଦେଖିଲଇଁ ବେନି ଡୋଳେ।
କି ଭାଗ୍ୟବଳେ।

ଶୁଖିଛି ଚନ୍ଦ୍ର ବଦନ, ନିରତେ ନୀର ଲୋଚନ,
ତେବେହେଁ ଶୋଭାକୁ ଉପମା ଦେବାକୁ ନାହିଁକି ସପ୍ତଭୁବନ।
ନାରୀ ରତନ।

ବନ୍ଦି କାନନ କରେ ପୁଣି, ଶ୍ରୀରାମଚନ୍ଦ୍ର ଘରଣୀ,
ଅସୁରପୁରେ ଅସୁଖ ଜଗିଛନ୍ତି ଜଗତର ଠାକୁରାଣୀ।
ରମଣୀମଣି।

କହନ୍ତେ ବଂଶାନୁଗୁଣ, ଶୁଭନ୍ତେ ସଖି ଶ୍ରବଣ,
ତରୁକୁ ଗୁହାଁଲେ ମର୍କଟ ଗୋଟିଏ କହେ ରାମକୀର୍ତ୍ତି ଗୁଣ।
ସେ ପୁଣ ପୁଣ।

କପି ତୁ କାହୁଁ ଅଇଲୁ, ଶ୍ରୀରାମ ନାମ ଧଇଲୁ,
ହୃଦୟ ମୋହର ଦହନକାଳରେ ଚନ୍ଦନ ଲେପନ କଲୁ।
ଯାହା ବୋଇଲୁ।

ହନୁ ବୋଲନ୍ତି ଗୋ ମାତ! ଶ୍ରୀରାମଚନ୍ଦ୍ରଙ୍କ ଦୂତ,
ଏମନ୍ତ କହିଣ ଚରଣ ତଳରେ ପଡ଼ିଲା ଯାଇ ତୁରିତ।
ସେ ରାମଦୂତ।

ଶ୍ରୀରାମ ମୁଦ୍ରିକା ଦେଲେ, ସଙ୍କେତମାନ କହିଲେ,
ତୁମ୍ଭଙ୍କୁ ପୃଥିବୀଯାକ ଖୋଜୁଅଛୁଁ, ଅଞ୍ଜନାସୁତ କହିଲେ ।
ପ୍ରସ୍ଥିତ ଗଲେ ।

ରାମ କଲେ ବାଳି ହତ, ସୁଗ୍ରୀ ସଙ୍ଗେ ହେଲେ ମିତ,
କୋଟି କୋଟି କପି ମନୋହର ସମାନେ ହୋଇଛୁଁ ପ୍ରଭୁଙ୍କ ଭୃତ୍ୟ ।
କହିଲି ସତ୍ୟ ।

ସମୁଦ୍ର ଡେଇଁ ଅଇଲି, ଲଙ୍କାଗଡ଼ରେ ପଶିଲି,
ତୁମ୍ଭ ଶ୍ରୀଚରଣ ଦର୍ଶନ ନ ପାଇ ପ୍ରାଣ ମୁଁ ହରାଉଥିଲି ।
ଭଲ ଦେଖିଲି ।

ରାମ ମାଲ୍ୟବନ୍ତ ଗିରି, ଶିଖେ ଛନ୍ତି ବାସ କରି,
ସୁଗ୍ରୀବ ସହିତେ ଅନେକ ମର୍କଟ ବନଗିରି ଛନ୍ତି ପୂରି ।
ସେ ଋଷ ହରି ।

ଆସେ କହେ ମୋର ବସ; ଯେବେ ଯିବ ରାମ ପଶ,
ରାବଣ ସହିତେ ମାରନ୍ତି ପ୍ରଭୁଙ୍କ ପ୍ରତିଜ୍ଞା ହୋଇବ ନାଶ ।
ଦେଖ ସାହସ ।

ଶୁଣିଣ ଦେବୀ ହରଷ, ହନୁକୁ ବସାଇ ପାଶ,
ବୋଲଇ ବଣି ବିଶ୍ୱାସ କଥା ଶୁଣି ସଂଶୟ ହେଲା ବିନାଶ ।
ଏ ରାମରସ ।

---

# ଜଟାୟୁ

କେଶବ ପଟ୍ଟନାୟକ



ଏଥୁଅନ୍ତେ ଶ୍ରଦ୍ଧା ଚିତ୍ତେ    କହନ୍ତି ଶଙ୍କର,
ଜଟାୟୁଷ ପକ୍ଷୀଈଶ    ଗରୁଡ଼କୁମର ।
ସେହି ବନେ ସବୁଦିନେ    ଥାଏ ଘର କରି,
ସେ ସମୀପେ ସେ ଯାଆନ୍ତେ    ଦେବ ରୂପଧାରୀ ।
ବୃକ୍ଷେ ଥାଇ ତାଙ୍କୁ ଚାହିଁ-    ଦେଲା ସେ ସତ୍ୱର,
ଚିନ୍ତିଲା ଉଦେ ହେଲା    ଭାଗ୍ୟ କି ମୋହର ।
ବେନଭାଇ କଥା ହୋଇ    ଯିବାର ଶୁଣିଲା,
ଏ ନିଶ୍ଚୟ ରାମଚନ୍ଦ୍ରେ    ବିଜୟେ ଜାଣିଲା ।
ସେ ଆନନ୍ଦେ ଗଦଗଦେ    ଭେଟିଲା ଶ୍ରୀମୁରେ,
ଦେଖି ତାକୁ ଲକ୍ଷ୍ମଣଙ୍କୁ    କହନ୍ତି ଠାକୁରେ ।
ହେ ସୋଦର ବେଗେ ମାର    ଏ ଅସୁର ଅଟେ,
ବନେ ଫେରି ଛଦ୍ମରୂପୀ    ମାନ ଧରି ଗ୍ରାସେ ।
ନ ବଞ୍ଚୁ ଏ ପାମର    ମରୁ ଶିରଚ୍ଛେଦ,
କହୁ କହୁ ମହାବାହୁ    ହେଲେ ବହୁ କ୍ରୋଧ ।
ପକ୍ଷୀମଣି ଏହା ଶୁଣି    ଯୋଡ଼ି ବେନି କର,
ଧୀରେ କହେ ମୁହିଁ ନୁହେଁ    ଜାଣ ନିଶାଚର ।
ପିତା ମୋର ଖଗେଶ୍ୱର    ସମ୍ପାତି ମୋ ଭାଇ,
ଦଶରଥ ନରନାଥ    ସଙ୍ଗେ ମିତ ମୁହିଁ ।

ତପ ସାଧିବାରେ ବୁଦ୍ଧି କରି ମୁଁ ଆସିଛୁ,
ମୂର୍ଖ ଜାଣି ତୁମ୍ଭପାଇଁ ପଥ ଚାହିଁଅଛୁ ।
ଧର୍ମରେ ତ ମୂର୍ଖ ତାତ ତୁମ୍ଭେ ସୁତ ହେବ,
କାହିଁପାଇଁ ସ୍ତବଗ୍ରାହୀ ମୋ ଜୀବନ ନେବ ?
ସୁତ ଦୁହେଁ ବୋଲି ସ୍ନେହେ ଫଟୋଳି ଆସିଲ,
ପୁଲକିତ ହେଲା ଗାତ୍ର ରହି ନ ପାରିଲ ।
ତୁମ୍ଭଠାରେ ସ୍ୱାମୀ କେବେ ଦୋଷ କରିନାହିଁ,
ତେଜ କ୍ରୋଧ, ହୁଅ ବୋଧ ତୋ ଆୟୁଧ ଥୋଇ ।
ଏହା ଶୁଣି ରାମ ଭଣି ହୋଇ ଲାଜ ଲାଜ,
ଆସ ଆସ ପାଶେ ବସ କି ଶୁଣିଲି ଆଜ ।
କାହିଁ ଥିଲ କି କହିଲ ଦୁଃଖ ନେଲ ମୋର,
ରହ ଦମ୍ଭେ ମୋର ତୁମ୍ଭେ ଧର୍ମର ପିଅର ।
ତୋତେ ଦେଖି ଆଜ ସୁଖୀ ହେଲୁ ସେ ଏଥର,
ଆଜଠାରୁ ହୃଦପୁରୁ ଭୟ ଗଲା ମୋର ।
ରଘୁବଂଶ ଏହି ସ୍ଥାନେ ମିଳଣ ରହିବା,
କେଶବ ବୋଲଇ ଦେବ ସୁଖେ ବଞ୍ଚୁଥିବା ।

# ସ୍ତୁତି : ପଞ୍ଚମ ବୋଲି

**ଭୀମ ଭୋଇ**



କାହିଁ ମୁଁ ରହିବ କେଉଁଠାକୁ ଯିବ ବୁଦ୍ଧି ଦିଶୁନାହିଁ ମୋତେ ।
ମାୟା ଦୁରୁଦଣ୍ଡ କାଟୁଅଛୁ ପିଣ୍ଡ ସମ୍ଭାଳି ସହିବ କେତେ ।୧।
ନ କର ବିଫଳ ସମ୍ପଦ ସକଳ ରଖ ଶୁଭାଶୁଭ ପଥେ ।
ନାମବ୍ରହ୍ମ ରଚି ପାଦେ ଥିବ ଖଟି ଜୀବ ଥିବା ପରିଯନ୍ତେ ।୨।
ଜନ୍ମରୁ ମୁଁ ଦାସ ଛିଣ୍ଡାଉଛ ଆଶ କରୁଅଛ ଅନାଦର ।
ପାପ ନାହିଁ ବର ଅନ୍ଧାର କରୁଛ ଦିଶୁଅଛୁ ଅସୁନ୍ଦର ।୩।
ସତ୍ତ୍ୱ ଥିଲେ କର ସାଧୁସନ୍ଥ ବର ନ ଥିଲେ ଧର୍ମ ବିବେକ ।
ପୁରୁଷ ଥାଇ ସ୍ତିରୀ ଘରନ୍ତ ନ ଥିଲେ ଗୃହେ ଥିବାର କି ସୁଖ ।୪।
ସଂସାର-ସାଗରେ ପୁତ୍ର-ଦୁହିତାରେ ଯେବଣ ପ୍ରାଣୀ ନିରେଖ ।
କୁଳଧର୍ମ ନାଶ କର୍ମ ଅପଯଶ ଭୁଞ୍ଜି ନ ଯୋଗାଏ ମୁଖ ।୫।
ଆଶା ବାଢ଼ ତୃପ୍ତି ଦୁର୍ଲଭ ସମ୍ପତ୍ତି ଧନ ଦ୍ରବ୍ୟ ଯାର ନାହିଁ ।
ଦେବତା ବ୍ରାହ୍ମଣ ନୃପଙ୍କ ସମ୍ମୁଖେ ନିରେଖି ଅଟଇ ସେଇ ।୬।
ସୁବୁଦ୍ଧି ସତ୍ୟରେ ଅର୍ଥ ସମ୍ପଦରେ ଶତ୍ରୁ ଯାର ଶ୍ରଦ୍ଧା ନାହିଁ ।
ପାଞ୍ଚ-ପଚିଶରେ ବାନ୍ଧ୍ୟ ଜଗତରେ ଜ୍ଞାନହୀନ ବୋଲି କହି ।୭।
ଜଳ ଅଗ୍ନି ହେଲେ ପବନର ଭୁଲେ ନୋହିବ ତା ସାଙ୍ଗସାଥୀ ।
କି ରୂପେ ଲହଡ଼ି ଆସିବ ସେ ମାଡ଼ି କି ରୂପେ ପାଳିବ ପୃଥ୍ୱୀ ।୮।
ପୃଥ୍ୱୀରେ ଅରୁଣ ତେଜମୟ ବର୍ଣ୍ଣ ଉଦେ ଯେମନ୍ତ ନୋହିବ ।
ନିଶିରେ ଚନ୍ଦ୍ରମା ପ୍ରକାଶ ନୋହିଲେ ଶୋଭା କେମନ୍ତ ପାଇବ ।୯।

ନବଖଣ୍ଡ କ୍ଷିତି ପୃଥ୍ୱୀ ଅଧିପତି ନ ଥିଲେ ପ୍ରଧାନ ଆଦ୍ଧ ।
ପାଇକ ପରଜା ବିଧିବାରେ ହେଜା ସର୍ବେ ଅଶୁଭ ଅସିଦ୍ଧି ।୧୦।
ଗୁରୁ ଥାଇ ଶିଷ୍ୟ ଲୋଡ଼ ନ ଆଣିଲେ ବାନା-ପାକ୍ଷାନ୍ତି ଅସାର ।
ପ୍ରତିଦ୍ୱନ ଧର୍ମ କି କରିବ କର୍ମ ଧାରଣା ବିଧି ବେଭାର ।୧୧।
ପଣ୍ଡିତ କବି ତ ପାଠେ ନାହିଁ ବୃତ୍ତ ଶୁଭ ଅନୁକୂଳେ ହୀନ ।
ଖଡ଼ି ଗୁଆ ପାଞ୍ଜି ହସ୍ତରେ ନଥିଲେ କି ଜାଣିବେ ପାପପୁଣ୍ୟ ।୧୨।
ଯୋଗିପୁରୁଷ ହୋଇ ଷଟସ୍ଥାରେ ବାଇ ନଥିବ ସାଧନା ଯୋଗେ ।
ମନପବନକୁ ପରଚେ ନ କଲେ ସାଧିବ ସେ କେଉଁ ବାଗେ ।୧୩।
ଦ୍ୱିଜବର ହୋଇ କ୍ରିୟାକର୍ମ ନାହିଁ ନୋହିଲ ଯେବେ ବେଦଧାରୀ ।
ତ୍ରିସନ୍ଧ୍ୟା ତର୍ପଣ ଜପ ମନ୍ତ୍ରେ ହୀନ କେବଣ ଗୁଣେ ସେ ସରି ।୧୪।
ସାଆନ୍ତ ଥାଇ ସେବକ ନ ଲୋଡ଼ିଲେ ଲୋକେ ପାନ୍ତି ଅପଯଶ ।
ସେବା ଥାଇ ଦୟା ହୃଦେ ନ ବହିଲେ ପ୍ରଭୁପଣ ବଡ଼ ଦୋଷ ।୧୫।
ଅନ୍ନରେ ବ୍ୟଞ୍ଜନ ବ୍ୟଞ୍ଜନେ ମଜ୍ଜନ ନୋହିଲେ ଲବଣ ପାଣି ।
ନାହିଁ ତା ସୁରଙ୍ଗ ମନକୁ ତରଙ୍ଗ କି ରୂପେ ଭୁଞ୍ଜିବ ପୁଣି ।୧୬।
ଧନ ଦାରା ସୁତ ଇଷ୍ଟ ବନ୍ଧୁ ଭ୍ରାତ ଶରଧା ନ ଥାଇ ଯେବେ ।
ମିତ୍ର ବନ୍ଧୁ ପ୍ରୀତି କି ରୂପେ ବଢ଼ିବ ସୁକୃତ ନ ଥିଲେ ପୂର୍ବେ ।୧୭।
ବ୍ରହ୍ମା ହୋଇକରି ତ୍ରିଗୁଣ ମାର୍ଗରେ ପିଣ୍ଡ ଯେବେ ନ ରଞ୍ଜିବ ।
ଜନମ ଜାତକ ବୃତ୍ତି ଯେବେ ନାହିଁ ୍ୟ ।ତାପରଣେ କେ ଗଣିବ ।୧୮।
ବିଷ୍ଣୁ ହୋଇ ଯେବେ ଛପନକୋଟି ଜୀବେ ନ କରେ ପ୍ରତିପାଳନ ।
ଆତ୍ମା ନ ଚିହ୍ନିଲେ ଧର୍ମ ନ ପାଳିଲେ କର୍ମ ପଦ ଅକାରଣ ।୧୯।
ସେହିରୂପେ ମୋତେ କୃପାଜଳ ଦେଇ କଷଣରୁ କର ପାର ।
ଭଣେ ଧାମ ହୋଇ ପଞ୍ଚମବୋଲରେ ଗୁରୁ ପାଦପଦ୍ମ ଧର ।୨୦।

---

# ବାସନ୍ତ ସନ୍ଧ୍ୟା

ରାଧାନାଥ ରାୟ



ଅତି ମନୋହର କାଳ, ଶୀତଋତୁ
ଧରା ଛାଡ଼ୁ ଛାଡ଼ୁ ନାହିଁ,
ପଲ୍ଲବ-ପାଟଳ ମଧୁ ଋତୁ-ରାଟ
ଧରା ମାଡ଼ୁ ମାଡ଼ୁ ନାହିଁ ।
ନଦୀତୀର ସ୍ୱର୍ଣ୍ଣ- ବର୍ଣ୍ଣ ରାମତିଳ
ସର୍ଷପ କୁସୁମେ ହସେ,
ମଧ୍ୟେ ନୀରବେଣୀ ସନ୍ଧ୍ୟା ମେଘ ରନ୍ଧ୍ରେ
ନୀଳ ନଭ-ରେଖା କି ସେ ?
ଖଳା ଅଗଣାରେ କଳେଇ ଗଦାର
ଆମୋଦ ସଙ୍ଗରେ ମିଶି,
ବବୁର ପ୍ରସୂନ- ବାସ ଜନପଦେ
ପ୍ରସରଇ ଅହର୍ନିଶି ।
ଥରେ ଥରେ ସ୍ୱୈର ମଳୟ ସ୍ୱୈରଇ
ଆସି ଚୁମ୍ବିଯାଏ ଧରା,
ଛାୟାରେ ଲାଗଇ ଶୀତ, ପୁଣି ଗଲେ
ଖରାକୁ କାଟଇ ଖରା ।
ଖରାବେଳେ ପାନ୍ଥ- ଭ୍ରାନ୍ତ ଜନମାଏ
ନିଦାଘ ଅଗ୍ର-ଦୂତିକା,

ସମୟେ ସମୟେ ଭରତ କୂଜନ୍ତି
ଦିଗନ୍ତେ ମୃଗ-ତୃଷ୍ଣିକା ।
କୁହେଳିକ ଉର ଜଳୁଁ କମଳିନୀ
ଟୋଳପାରୁ ନାହିଁ ମୁଣ୍ଡ,
ମୁକୁଳ ଉଦ୍‌ଗମ ଲାଗି ଚୂତଡାଳେ
ବାନ୍ଧୁଅଛି ପର୍ଣ୍ଣକୁଣ୍ଡ ।
ମଧୁସ୍ରାବ-ପୁଷ୍ପ- ସ୍ତବକେ ସରାଗେ
ମଣ୍ଡିବାକୁ ନିଜ ଅଙ୍ଗ,
ତେଣେ ଏଣେ ଷଦ କ୍ଷୁଦ୍ର ପର୍ଣ୍ଣକୋଷ
ସଜାଉଅଛି ବାସଙ୍ଗ ।
ହିମ ଯୋଗୁଁ ଅଳି- ସଂଯୋଗ ବଞ୍ଚନେ
ସୁନ୍ଦରୀ-ରଦନ-ଛବି,
କୁନ୍ଦ-ସୁନ୍ଦରୀଙ୍କ କଟାକ୍ଷ ଲକ୍ଷ୍ମୀର
ଲୀଳା ପାରନାହିଁ ଲଭି ।
ଚୌଦିଗେ ଶୁଭଇ ସିନ୍ଦୂରମଣ୍ଡିର
ସ୍ୱାଗତ ଋତୁନାୟକେ,
ମଧୁ ଶୁଖି ଶୁଖି ପ୍ରଜାପତି ବୁଲେ
ଗେଣ୍ଡୁଫୁଲେ, କୁରୁବକେ ।
ଯାମେ ଯାମେ ଆମ୍ର- କୁଞ୍ଜେ ନିଦାଘରେ
ସମସ୍ୱରେ ତୋଳି ଧ୍ୱନି,
ଢଳଢଳ ହର୍ଷେ ଦିଅନ୍ତି ସଘନେ
ଘଟରଧୂମା ଘରଣୀ ।

କାନନେ ଅଫୁଟେ ଶୁଭେ କେବେ କେବେ
କଳଗୀତି କୋକିଳର,
ଝଙ୍କାର ଚଢ଼ାଉ- ଅଛୁ କି ସେ ନିଜ
କଣ୍ଠଯନ୍ତ୍ରେ ନୂଆ ତାର ?
କାନନେ କାନନେ ଠାବେ ଠାବେ ଶ୍ୱେତ
ପଲ୍ଲବେ ସ୍ୱବପୁ ମଣ୍ଡି,
କାନନ-ଲକ୍ଷ୍ମୀର ଚନ୍ଦନ ରଚନ
ପରାଗେ ଶୋଭେ ଅଚଣ୍ଡି ।
ନିଆଳୀ ବସନ୍ତ ପୂଜା ଇଚ୍ଛି କଳି-
ଗୁଚ୍ଛକୁ କରୁଛି ସଜ,
ବଉଳିଛି ବନେ ପିଆଳ ବିଟପୀ
ମାତ୍ର ବାନ୍ଧି ନାହିଁ ରଜ ।
ସୁଖ-ଆଶେ ଖେଳ ସରବେ ଏକାଳେ
ସୁଖ ତ ଭବେ କ୍ଷଣିକ,
କିଏ ନ ଜାଣଇ ସୁଖଠାରୁ ସୁଖ
ଆଶାରେ ସୁଖ ଅଧିକ ।

---

# ଏ ସୃଷ୍ଟି ଅମୃତମୟ ହେ !

ମଧୁସୂଦନ ରାଓ



—୧—

ମଧୁମୟ ସୃଷ୍ଟି ସୁଧାମୟ ସୃଷ୍ଟି
ଏ ସୃଷ୍ଟି ଅମୃତମୟ ହେ,
ଜାଗ ନରନାରୀ ଅମୃତ-ସନ୍ତତି,
ପିଅ ସେ ଅମୃତପୟ ହେ;
ପିଅ ସେ ଅମୃତ ଢ଼ଳସ ଶବଦ
ଗାଅ ଅମୃତର ଜୟ ହେ ।

—୨—

ମହାନ ଅନନ୍ତ ଉଦାର ଆକାଶ
ତେଜେ ତେଜେ ତେଜୋମୟ ହେ,
ସେ ବରେଣ୍ୟ ଭର୍ଗ ମହାକାଶଧାର
ନାଶଇ ମରଣଭୟ ହେ;
ସେ ତମିର-ହର ଗଗନର ଜ୍ୟୋତି
ପାନେ ହୁଅ ପୁଣ୍ୟାଶୟ ହେ ।

—୩—

ଅକୂଳ ଅତଳ ମହା ପାରାବାର
ନାଦେ ନାଦେ ନାଦମୟ ହେ,

ଅବନୀ ଲକ୍ଷ୍ମୀର          ପ୍ରସବିତା ସିନ୍ଧୁ
ନବଡ଼ ନୀଳିମା-ମୟ ହେ;
ଚପଳ ତରଙ୍ଗେ          ଢାଳେ ନାଦ-ସୁଧା
ପିଅ ସେହି ତାଳ ଲୟ ହେ।

—୪—

ଅମ୍ବର ଚୁମ୍ବିତ          ମହା ମହୀଧର
ହିମେ ହିମେ ହିମାଳୟ ହେ,
ଧରଣୀ ବେଣୀ          କେତେ ଗିରିଶ୍ରେଣୀ
ନିର୍ଝର ମୁକୁତାମୟ ହେ;
ସେ ଶିଳା-ଲୀଳାରେ          ଘନୀଭୂତ ସୁଧା
ପାନେ ପାପ କର କ୍ଷୟ ହେ।

—୫—

ଦିଗନ୍ତବିହାରୀ          ବାୟୁ ସଦା ଗତି
ଶ୍ୱାସେ ଶ୍ୱାସେ ଶ୍ୱାସମୟ ହେ,
ମଳୟ-ଲାସ୍ୟ ବା          ପ୍ରଳୟ ତାଣ୍ଡବେ
ସଦା ଚଞ୍ଚଳ ଅଥୟ ହେ;
ସେ ମୃଦୁଳ ଲାସ୍ୟେ          ସେ ଚଣ୍ଡ ତାଣ୍ଡବେ
ଅମୃତର ଅଭିନୟ ହେ।

—୬—

ମରୀଚିକାମୟ          ତରୁ-ଶୂନ୍ୟ ମରୁ
ଘୋର ତୃଷା ରଙ୍ଗାଳୟ ହେ,
ଦିଗନ୍ତ ବିସ୍ତୃତ          ଜ୍ୱଳନ୍ତ ପ୍ରାନ୍ତର
ପଥନ୍ୟେ ନିରାଶ୍ରୟ ହେ;

ସେ ମରୁ ଅନ୍ତରୁ ବହେ ସୁଧାସ୍ରୋତ
ପିଅ ସେନ୍ତ ସୁଧାପୟ ହେ ।

—୭—

କୋମଳ ଶ୍ୟାମଳ ତୃଣ ଶସ୍ୟକ୍ଷେତ୍ର
ବନ-ତରୁ-ଲତାମୟ ହେ,
ବର୍ଣ୍ଣେ ବିଚିତ୍ରିତ ଶବ୍ଦେ ମୁଖରିତ
ଗନ୍ଧେ ପୂରିତ ହୃଦୟ ହେ;
ଡାଳେ ଡାଳେ ଢାଳେ ମଧୁରସ-ଧାର
ଫଳ ପୁଷ୍ପ କଣଳୟ ହେ ।

—୮—

ନଦ୍ୟ ବହମାନ ନଦନଦୀମାନ
ସ୍ବଚ୍ଛ ସରୋବରଚୟ ହେ,
ସମୀର ପରଶେ କଲକଲନାଦ
ରମ୍ୟ ବୀଚି-ମାଳା-ମୟ ହେ,
ବକ୍ଷରେ ବିମ୍ବିତ ଚନ୍ଦ୍ର ସୂର୍ଯ୍ୟ ତାର
ଜନମାଏ କି ବିସ୍ମୟ ହେ ।

—୯—

ଭୂଲୋକ ଦ୍ୟୁଲୋକ ପୁଣି ଅନ୍ତରୀକ୍ଷ
ପ୍ରକୃତିର ନାଟ୍ୟାଳୟ ହେ,
ସ୍ଥାବର ଜଙ୍ଗମ ପଶୁ ବିହଙ୍ଗମ
କୀଟ-ପତଙ୍ଗମ-ଚୟ ହେ;
ରହସ୍ୟ-ପୂରିତ ଏ ଅସୀମ ବିଶ୍ବ
ଅମୃତେ ଅମୃତମୟ ହେ ।

—୧୦—

ପୂର୍ବାଶାର ଦ୍ୱାରେ ଉଦ୍ଭ ଊଷାରାଣୀ
ସୂଚ ଭାନୁ ଅଭ୍ୟୁଦୟ ହେ,
ସ୍ନିଗ୍ଧ ଛାୟାମୟୀ ସନ୍ଧ୍ୟା ମହାଦେବୀ
ଆଦେଶିଣ ଧ୍ୟାନ ଲୟ ହେ;
ଆଲୋକ-ବିଳାସୀ ଉଜ୍ଜଳ ଦିବସ
କର୍ମ-ଜାଗରଣମୟ ହେ ।
ତମସ୍ୱିନୀ ଅବା ଜ୍ୟୋସ୍ନାମୟୀ ରାତି
ବିଶ୍ରାମର ସୁସମୟ ହେ,
ବସନ୍ତ ନିଦାଘ ବରଷା ଶରତ
ହିମ ଶୀତ ଋତୁଚୟ ହେ;
ପ୍ରଶାନ୍ତ ଗମ୍ଭୀର ମଧୁର ରୁଚିର
ଦିବ୍ୟ ସୁଧା-ସ୍ୱାଦମୟ ହେ ।

—୧୧—

ଗୃହ ପରିବାର ମାନବ ସମାଜ
ନରନାରୀ ଲୋକାଳୟ ହେ,
ପିତା ମାତା ଭାଇ ଭଗିନୀ ଦମ୍ପତି
ତନୟା କନ୍ୟା ତନୟ ହେ;
ଗୁରୁଜନ, ବନ୍ଧୁ କମ୍ବା ଅନ୍ତେବାସୀ
ଆଶୀର୍ବାଦ ପରିଚୟ ହେ ।
ଦୟା ନିକେତନ ଧର୍ମାଧିକରଣ
ବିଦ୍ୟାଳୟ ଦେବାଳୟ ହେ,

ଶ୍ରଦ୍ଧା ଭକ୍ତି ପ୍ରୀତି    ଦୟା ଶୁଭକାଂକ୍ଷୀ
ପୁଣ୍ୟ-ବିଶ୍ୱାସ ବିନୟ ହେ;
ଏ ସକଳ ମଧେ    ନିବସନ୍ତି ବିଭୁ
ଶାଶ୍ୱତ ଅମୃତମୟ ହେ,
ଗରଳୁ ଅମୃତ    କରନ୍ତି ବାହାର
ଅନନ୍ତ ଅମୃତାଳୟ ହେ,
ପରମ-ଜନକ    ପରମ-ଜନନୀ
ତାଙ୍କ ପଦେ ବିଗଭୟ ହେ;
ସେଥିବି ବିଗଭୟ    ଆନନ୍ଦାମୃତର
ଦୁଗ୍ଧ ଶିଶୁ ସ୍ତନନ୍ଧୟ ହେ ।

---

# ଅନନ୍ତ ବିଶ୍ରାମ

ଫକୀରମୋହନ ସେନାପତି



ସଂସାର ଅନ୍ଧକାରେ    ଭ୍ରମି ମୁଁ ବାରେ ବାରେ
ନିତାନ୍ତ ହୋଇଛୁ ମୁଁ କ୍ଲାନ୍ତ,
ସମ୍ମୁଖ ପଶ୍ଚାତରେ    ଦକ୍ଷିଣେ ବା ଉତ୍ତରେ
ଲକ୍ଷ୍ୟ ନ ପାଇ ହୁଏ ଭ୍ରାନ୍ତ
ମୋ ସଂଗୀଜନେ,
କାହାକୁ ନ ଦେଖେ ତ ପାଶେ  ଥିଲି ମୁଁ ସେମାନଙ୍କ ଆଶେ
ନେବେ ବୋଲି ସଙ୍ଗରେ    ବହୁତ ସମାଦରେ
ଧାବତ ସବେ ନିଜ ବାସେ ।
ଏବେ ଲଭିଛୁ ଶାନ୍ତି    ମେଣ୍ଟିଛି ଭୁଲ ଭ୍ରାନ୍ତି
ବିଳାପ ବିଷାଦ ସନ୍ତାପ,
ଯାଇଛି ଭଲ ମନ୍ଦ    ପ୍ରେମ ମିଳନ ଦ୍ୱନ୍ଦ୍ୱ
ଉଲ୍ଲାସ କ୍ଲାନ୍ତି ପୁଣ୍ୟ ପାପ,
ମୁଁ ବର୍ତ୍ତମାନ
ଲଭିଛି ସୁଧାମୟ ସ୍ଥାନ    କରେ ଆତ୍ମାକୁ ଧନ୍ୟ ଜ୍ଞାନ
ଏବେ ମୁଁ ନିଶ୍ଚିନ୍ତରେ    ରହିବି ଏ ସ୍ଥାନରେ
ରକ୍ଷଣ ପ୍ରଭୁ ଭଗବାନ ।
ସେ ଯେ ବିଶ୍ୱସଂସାର    ଆଲୋକ ଅନ୍ଧକାର
ସମ୍ବନ୍ଧ ନାହିଁ ଏହି ସ୍ଥାନେ,

ନୟନୁ ଅଶ୍ରୁଧାର ବିଳାପ ହାହାକାର
ଯାଇଛି କାହିଁ ଅନ୍ତର୍ଦ୍ଧାନେ
ମୁଁ ଦେଖେ ଚାହିଁ,
ପୃଥ୍ୱୀ ସମ୍ପର୍କ କାହିଁ ନାହିଁ ପ୍ରାଣ ଆକୁଳ ଯାହା ପାଇଁ,
ମାର୍ଜନା ରୋଷ ଘୃଣା ସନ୍ତାପ ବା ଯନ୍ତ୍ରଣା
ନ ଦେଖେଁ ଚିହ୍ନ ମାତ୍ର କାହିଁ ।
ପୃଥ୍ୱୀ ଲୋକ ସକଳ ଭୁଞ୍ଜନ୍ତି କର୍ମଫଳ
ଏଥି ମୁଁ କଲି ଅନୁମାନ
ମାତ୍ର ମୋର ସିଦ୍ଧାନ୍ତ ଲାଗୁଛି ହେବ ଭ୍ରାନ୍ତ
ଦେଖେଁ ତା ସକଳ ସମାନ
ମୁଁ ଏ ସ୍ଥାନରେ,
ଧର୍ମାଧର୍ମର ଫଳାଫଳ ନ ଦେଖେଁ, ସମାନ ସକଳ,
ସୁକର୍ମ ବଳାବଳେ ଅଛନ୍ତି ଚିରଦିନେ
ଛନ୍ତି ତ ସର୍ବେ ନିରନ୍ତରେ ।
ନାହିଁ ଚନ୍ଦ୍ର ତାରକା ଆହ୍ଲାଦ ବର୍ଦ୍ଧିକା
ନାହିଁ ଆକାଂକ୍ଷା ଅଭିଳାଷ,
ନାହିଁ ଧୀର ପବନ ନାହିଁ ନୀଳ ଗଗନ
ନାହିଁ ତ ଆଶା ମରୀଚିକା
ସେ ଏ ସ୍ଥାନରେ,
ଏକ ମାତ୍ରକେ ଜ୍ୟୋତିର୍ଷ୍ମାନ ବ୍ୟାପି ଅଛନ୍ତି ସର୍ବସ୍ଥାନ
ତାହାଙ୍କୁ ସମ୍ମୁଖରେ ଦେଖୁଛି ଆନନ୍ଦରେ
ଏହି ମୋ ଅନନ୍ତ ବିଶ୍ରାମ ।

---

# ଗ୍ରାମ ଖଳା

ନନ୍ଦକିଶୋର ବଳ



ଗ୍ରାମ ପ୍ରାନ୍ତେ ଛର ଟେଙ୍କେ ଖଳା
ମେଣ ପୋଡ଼ ପକାନ୍ତ ବେଙ୍ଗଲା
ବାନ୍ଧ ମଞ୍ଚା ମଧ୍ୟ-ସ୍ଥାନେ   ଜଗନ୍ତ ରାତିରେ ଧାନେ,
ମିଛେ ସତେ ଦେଖିଥାନ୍ତ ସେ ସବ୍ ଘଟନା
କଳ୍ପନା ବଳରେ ପ୍ରାତେ କରନ୍ତ ଜଳ୍ପନା !

ପଲ୍ଲୀ ଖଳା ପାଶେ ଜଳାଶୟ,
ପ୍ରସ୍ଫୁଟିତ କୋକନଦଚୟ;
ନାନା ଜଳଚରଗଣ   କରୁଥାନ୍ତ ସନ୍ତରଣ,
ହଂସ କାଦମ୍ବାଦ ପକ୍ଷୀ କରୁଥାନ୍ତ ସ୍ୱନ,
ଶୁଣନ୍ତେ ସାନନ୍ଦ ହୁଏ ଭାବୁକର ମନ ।

ପ୍ରଭାତୁ ଉଠିଣ ଗ୍ରାମବାସୀ
ମେଳ ହୋନ୍ତ ଏକ୍ତଠାରେ ଆସି,
ଖାଏ ପିକା କେହୁ ବସି   ଗଳ୍ପ କରେ କେହ୍ୱି ହସି
ମୁହୁର୍ମୁହୁ ଚୁଟ୍କି କରେ କେ ନସ୍ୟ ଗ୍ରହଣ,
ଜଳଘଟରେ ବସି କରେ କେ ଦନ୍ତଧାବନ ।

କ୍ଷୌର କର୍ମେ ନାପିତପ୍ରବର
ବସି କହେ ବିଦେଶ ଖବର,
ଧର୍ମ ଶାସ୍ତ୍ରେ ସମରଥ   ବୃଦ୍ଧ କହେ ଧର୍ମମତ,
କେହି ଗୃହ କଥା, କେହି ବଳର ସମ୍ବାଦ,
ଅନର୍ଥକ ବିଷୟେ କେ କରନ୍ତି ବିବାଦ।

ବିଲୁଁ କଟା ହୋଇ ଅଧା ଅଧା
ପ୍ରଶସ୍ତ ଖଳାରେ ଧାନ ଗଦା
ହୋଇଅଛି ଗଦା ଗଦା,   କୃଷକର ଘୋର ଧନ୍ଦା,
ସାହୁ ମହାଜନ ସୁଝି କୁଟୁମ୍ବ ପାଳିବ,
ସେହି ଧାନ ବିକ ପୁଣି ରାଜସ୍ୱ ଗଣିବ।

ଅସ୍ଥିର ଏ ଭବର ବେଭାର
କିଛି ଚିର ନ ରହେ କାହାର
ଆଜି ଯେ ମୁକୁଟଧାରୀ   କାଲି ସେ ବାଟ ଭିକାରୀ,
କିନ୍ତୁ ଭୂମି କୃଷକ ରେ ଚିରକାଳ ରହି
ନିଜ ରକ୍ତଦାନେ ପାଳୁଁ ଏ ବିଶାଳ ମହୀ।

ବ୍ରାହ୍ମଣ, ସନ୍ନ୍ୟାସୀ, ଧନୀ, ମାନୀ
ହୋଇଲେ ହେଁ ଆତ୍ମ ଅଭିମାନୀ,
ଯେବେ ବା ତୁ ଅତି ଦୀନ   ନୋହୁ ତାଙ୍କଠାରୁ ହୀନ,
ବୈଶାଖର ଖରା ପୁଣି ଶ୍ରାବଣର ଧାରା
ମାଘ ମାସ ଶୀତ ସହି ଖଟୁ ବର୍ଷ ସାରା।

ହେ କୃଷକ, ଅଶେଷ କଷଣ
ସହି ଅର୍ଜ୍ଜୁ ତୁ ଅଳପ ଧନ,
ଅକର୍ମା ଅଳସ ଜନେ    ଶୋଷନ୍ତି ନିଷ୍ଠୁର ମନେ
ଭିକ୍ଷୁକ, ବ୍ରାହ୍ମଣ, ଯୋଗୀ, ବୈଷ୍ଣବ ରୂପରେ,
ଭିକ୍ଷାଜୀବୀ ପ୍ରବଞ୍ଚକ ଅଟନ୍ତି ସେ ନରେ ।

କର୍ମକୁଣ୍ଠୀ ଅଳସେ ତୋ ଧନ
ଦେଇ ପାପ ନ କର ଅର୍ଜନ,
ଅକ୍ଷମ ସକଳେ ହରି    ଦେହ ମନ ଦାନ କରି
ସୁସ୍ଥ ଦେହେ ପରଧନ ଭୋଗରେ କାହାର
ଆଚଣ୍ଡାଳ ବ୍ରାହ୍ମଣରେ ନାହିଁ ଅଧିକାର ।

କିନ୍ତୁ ଘେନ ଅସମର୍ଥ ଜନେ
ଅନାଥ ତୁ ସଦୟ ନୟନେ,
ହେଲେ ହେଁ ବ୍ରହ୍ମଚଣ୍ଡାଳ    ନ ବିଚାରି ଦେଶକାଳ
ସାଧ୍ୟ ଅନୁଯାୟୀକର ତା' ଦୁଃଖ ମୋଚନ,
ଧନ୍ୟ ସେ ପରାର୍ଥେ ପ୍ରାଣ କରେ ଯେ ଧାରଣ ।

କର୍ମ କର କର୍ମ କର ଭାଇ
କର୍ମଠାରୁ ପୁଣ୍ୟ ଆଉ ନାହିଁ,
ସାଧୁ-କର୍ମ-ଲବ୍ଧ-ଧନେ    ଆନନ୍ଦେ ଯାପ ଜୀବନେ
ଶକ୍ତି ଅନୁସାରେ ଦିଅ ଦୁଃଖି-ଭିକ୍ଷା-ପାତ୍ରେ,
ଉଦ୍‌ବୃତ୍ତ ଅର୍ଥ ସଞ୍ଚୟ କର ବିପଦାର୍ଥେ ।

କୃଷି ଲବ୍ଧ ଶସ୍ୟ ବିକାକଣା
କଲେ ଧନ ବୃଦ୍ଧି ହୁଏ ସିନା,
ବାଣିଜ୍ୟ ଷୋଳଣା ଧନ        କୃଷି କର୍ମେ ଆଠପଣ,
ରାଜକର୍ମେ ଚାରି ପଣ, ଭିକ୍ଷାବୃତ୍ତି ଘୃଣ୍ୟ ଅତି,
ଧିକ ତା' ଜୀବନ ଭିକ୍ଷା ଜୀବିକା ଯାହାର ।

ଧନ୍ୟ ଧନ୍ୟ କୃଷକ ହେ ତୋତେ,
ଖଟି ଖଟି ପୋଷୁଅଛୁ ମୋତେ,
ହେଉ ତୋତେ ମରଣ ଯେବେ        ଅବଶ୍ୟ ନର୍ମମ ସେବେ,
ତା'ର ଗର୍ବେ ସଂସାରର କି ଲାଭ ହୋଇବ !
ତୋ ବିହୁନେ ଏ ସଂସାର କ୍ଷଣେ ନାଶ ଯିବ ।

---

# ରାଜଧର୍ମ

ଗଙ୍ଗାଧର ମେହେର



ଭଗୀରଥୀ-କୂଳେ     ଲକ୍ଷ୍ମଣ ଯେ କାଳେ
ବୈଦେହୀ ବିସର୍ଜି ଗଲେ,
ବ୍ୟାପିଥିଲା ଝଡ଼     ସସାଗରା ଧରା
ନିର୍ମଳ ଅମ୍ବର ତଳେ ।

ତାଣ୍ଡବ - ବଧୂର     ନର୍ତ୍ତନ ସୁର-
ପୁରକୁ ଢଣିଲେ ଲଙ୍କା,
ହେବ ବୋଲି ଦିବା-     ନାଥ କି ସେ କିବା
ଶୁଭ୍ର ଯବନିକା ସଜ୍ଜା ।

ଜାଣି ସେ ରହସ୍ୟ     କରିବାକୁ ଦୃଶ୍ୟ
ଭାସ୍କର ବଂଶର ଦୋଷ,
ଅଚିରେ ଅବନୀ-     ପୃଷ୍ଠୁ ସେ ଯବନୀ
ଉଠାଇ ଦେଲା ପ୍ରଦୋଷ ।

ବିହଙ୍ଗମ - ଗଣ     ଡାକନ୍ତେ ଗଗନ
ପ୍ରାଙ୍ଗଣ ତାରକାକୁଳ,
ଏକ ପଛେ ଏକ     ତା' ପଛେ ଅନେକ
ଆସି ହୋଇଗଲେ ଠୁଳ ।

ଦେଖିଲେ ସ୍ୱଜନେ ପ୍ରଶସ୍ତ ପ୍ରାଙ୍ଗଣେ
ରାମଚନ୍ଦ୍ର ବଂଶୀ,
ବିଷଣ୍ଣ-ବଦନେ ସଜଳ ନୟନେ
ଏକାକୀ ଅଛନ୍ତି ବସି ।

ଘରୁଥିଲେ ରାଜ ଅଧିକାର ବ୍ୟାଜ
ଅଟେ ମହା ଦାସତ୍ୱର,
ଏହି ଉଚ୍ଚପଦେ ପ୍ରକୃତିର ପଦେ
ଖଟିବ ହୁଏ ମାତର ।

ମିଥ୍ୟା କଥା ଯେବେ ପ୍ରଜାଏ କହିବେ
ମେଳ ହୋଇ ଶତ ଶତ,
ମିଥ୍ୟା ଜାଣି ଜାଣି ତାଙ୍କୁ ମାନି ମାନି
ବୋଲିଯାଏ ସତ ସତ ।

ପ୍ରକୃତିର ଶାନ୍ତି- ସଙ୍ଗରେ ନୃପତି
ସୁଖନ୍ତି ସ୍ୱଭାବେ ବଳି,
ଦୃଢ଼ ଧର୍ମ-ଦାମେ ବନ୍ଧି ନିଜ କାମେ
ପାଦେ ନ ପାରଇ ଚଳି ।

ଅଭିଷେକ ଯାହା କରିଆନ୍ତି ତାହା
ଘୋଷଣ ମାତର ବିନା,
ଚାମର ଢାଳିବା ଅନ୍ୟ କି ବୋଲିବା
ମକ୍ଷିକା ତଡ଼ିବା ବିନା ?

ସୁଖେ ନଇଶ୍ୱର୍ଯ୍ୟ ନ ଥିବ ଅବଶ୍ୟ
ଦେବତା ହୃଦୟେ ସୁଦ୍ଧା,
ଯେ ହେତୁ ମନ୍ଥନ୍ତି ଦେବତା ନୃପତି
ସେବଇ ଝରନ୍ତି ସୁଧା ।

ପ୍ରଜାରକ୍ତ ଜଳ- କଣିକା ପଟଳ
ସିନା ଉଚ୍ଚାସନ ପାଇ,
ଜଳଧର ରୂପ ହୋଇଥାଏ ନୃପ
ପରଜାର ହିତ ପାଇଁ ।

ଭୂମିତଳେ ବଜ୍ର ନ ଥାଏ, ସହଜ
ମାତ୍ର ତାହା ଜଳଧରେ,
ପ୍ରଜା-କର-ଦଣ୍ଡ ନ ହୁଏ ପ୍ରଚଣ୍ଡ,
ପ୍ରଚଣ୍ଡ ନୃପତି କରେ ।

ହ୍ରଦ ଘଟେ ଜଳେ ବିଦ୍ୟୁତ-ଅନଳେ
ଜଳଦାନେ ଘନ ବାଧ୍ୟ,
ସୁଖ ତେଜ ରାଜା ତୋଷିବ ପରଜା,
ତେବେ ତ ପରମାରାଧ୍ୟ ।

ସ୍ୱର୍ଗ ଋକ୍ଷଶ୍ରେଣୀର ସମୁନ୍ନତ ଶିର
ରାଜପଦ ଭୂମଣ୍ଡଳେ,
ହେଲେ ଲକ୍ଷ୍ୟ-ଭ୍ରଷ୍ଟ, ପଡ଼ି ହୁଏ ନଷ୍ଟ
ନୃପତି ଘୋର ତଳେ ।

ମାପ୍ୟାକାର ପରି ଦଣ୍ଡ ଗୋଟି ଧରି
ସମଦୃଷ୍ଟି ସମଭାବେ,
ରାଜନ ରଜ୍ଜୁରେ ବଳସି ରଜୁରେ
ନିଜ ଜୀବନ ନ ଭାବେ ।

ଯଥା ବାଜୀକର ରଜ୍ଜୁରେ ଚତୁର
ଦେଲରୁ ନ ଯିବ ଖେଳ,
ତାଳ ମାରି ଥୋକେ ହସି ଦେବେ ଲୋକେ
ବାଦ୍ୟକାର ଦେବ ଗାଳି ।

ପ୍ରିୟା ମଇଥିଳୀ ବିରହେ ଶିଥିଳୀ-
କୃତ କରି ପ୍ରାଣ ଯେବେ,
ନ କରିବ କାର୍ଯ୍ୟ ମାନବ ସମାଜ
ଆହୁରି ଗଞ୍ଜିବେ ତେବେ ।

ବୋଲିବ ସଂସାର, ରାମ କୁଳାଙ୍ଗାର
ଜନ୍ମ ଲଭି ରଘୁବଂଶେ,
ବର୍ବର - କୃପଣ ହୋଇ ରାଜପଣ
ତ୍ୟାଗ କଲା ବଧୂବଶେ ।

ବାନପ୍ରସ୍ଥାଶ୍ରମ ହେଲେ ହେଁ ଉତ୍ତମ
ସମୟ ମୋ ହୋଇ ନାହିଁ,
ମୋ କାର୍ଯ୍ୟେ ଭରତ ହେବାକୁ ନିରତ
ସମ୍ମତ ବା ହେବ କାହିଁ !

ଅଙ୍କ ଦ୍ରବ୍ୟ ପ୍ରୀତି    ହ୍ରାସ ନିତ ନିତ
ଦେଖି ଦେଖି ପୁନଃ ପୁନଃ,
ହେଲେ ଶୂନ୍ୟ ଅଙ୍କ    ଶୂନ୍ୟ ଯୋଗେ ଅଙ୍କ
ପର ହୃଦ ପ୍ରୀତି ଗୁଣ ।

ସ୍ଥୂଳ କଳେବର    ନୁହଇ ଅମର,
ଅମର କେବଳ ମନ,
ମନେ ଯେବେ ସଙ୍ଗ    ହୋଇନାହିଁ ଭଙ୍ଗ
ସେହି ସୁଖ ସୁଖେ ଗଣ୍ୟ ।

କେ'ରହିଛି ଭବେ    ବାସ୍ତବ ବଇଭବେ
ସୁବର୍ଣ୍ଣ-ମୁକୁଟ ବାନ୍ଧ ?
ଯଶ ଅପଯଶ    ନୋହି କାଳ ବଶ
ହୁଅନ୍ତ ତା ପ୍ରତିବାଦୀ ।

ସ୍ୱରଗ-ନରକ    ଗତି ନିର୍ଦ୍ଧାରକ
ସ୍ୱଭାବେ ଜଗତ-ଜନ,
ଏଡ଼ି ଜନରବ    ଅନିତ୍ୟ ବାସ୍ତବ
ସୁଖ ଲୋଡ଼େ ମୀତ ମନ ।

---

# ଗିରି ଶିଖେ ଲକ୍ଷ୍ୟ ରଖି ଚାଲିବି ମୁକ୍ତର

ଗୋପବନ୍ଧୁ ଦାସ



ଯେତେ ଦୂର ଯାଏ ଚାଲି
ଚଉପାଖେ ଖାଲି ବାଲି,
ନାହିଁ କାହିଁ ଶ୍ୟାମ-ଶସ୍ୟ ନବ ଦୂର୍ବାଦଳ,
ନାହିଁ ଲତା, ନାହିଁ ତରୁ
କେବଳ ଭୀଷଣ ମରୁ,
ଦିଶେ ନାହିଁ କାହିଁ ଜଳ ଫୁଲ ଅବା ଫଳ ।
ସୁନୀଳ ସୁନ୍ଦର ଗିରି
ଧରି ଅନୁପମ ଶିରୀ,
ଦିଶୁଥିଲା ଅଳ୍ପ ଦୂରେ ଚକ୍ରବାଳ ମୂଳେ,
ଉଜ୍ଜ୍ୱଳ ତାରକାଶ୍ରେଣୀ
ଦିବ୍ୟ ଆଲୋକେ ବିଖେରି,
ନିରନ୍ତର ଶୋଭୁଥିଲା ତାର ଚାରୁ ଚୂଳେ ।
ଭ୍ରମଣ ପ୍ରଥମ କ୍ଷଣେ
ଭାବି ନ ଥିଲି ମୁଁ ମନେ,
ହେବ ବୋଲି ଏତେ ଦୂର ଏ ବିଷମ ପଥ,
କ୍ରମେ ବଢ଼ିଯାଏ କାଳ
କ୍ରମେ ଘୁଞ୍ଚେ ଚକ୍ରବାଳ,
ଶିଥିଳ ସୈକତେ ଚଳେ ମୋର ମନୋରଥ ।

ଆଜ କେତେ ଦିନ ଅନ୍ତେ
ଦୁସ୍ତର ବାଲୁବନ୍ତେ,
ନ [redacted] ପାଦ ସିନା ଥକା ମାର,
ନ ଦେଖିବ ଜନ ଆଖି,
ଘୋର ପନ୍ଥାରେ ଏକାକୀ,
ଚାଲିଚିବ ସତେ ପ୍ରାଣ ବୃଥା ଘାର ଘାର !
ଗଲେ ପଛେ ଯାଉ ଜୀବ
ଯାହା ହେବ ଦେଖାଯିବ,
ହେଲେ କହଉ ସେତେ ଦୂର ଏ ଦୁର୍ଗମ ପଥ,
କହ କେଉଁ ମୂଢ଼ଜନ
କର ଥରେ ବିଲୋକନ,
ଏ ଅପୂର୍ବ ଦିବ୍ୟ ଦୃଶ୍ୟ ରହିବ ବିରତ ?
ଅବସନ୍ନ ହେଲେ କାୟା
ଆଶ୍ରିବ ଏ ଗିରି ଛାୟା,
ବାଲି ଶେଯେ ଶୋଇବଇଁ ଯାଇ ଅଧେ ବାଟ,
ତାରକିତ ଗିରି ଚୂଡ଼େ
ନଟେଶୀ ନୟନ ଦୃଢ଼େ,
ଫେଡ଼ିବ ପରମ ସୁଖେ ହୃଦୟ-କବାଟ ।
ସୁଦୂର ସାଗର-ଗୀତି
ଶ୍ରବଣେ ସ୍ୱର୍ଗୀୟ ପ୍ରୀତି,
ଲଭିଣ ମୋ ପ୍ରାଣ-ପକ୍ଷୀ ଉଡ଼ିଯିବ ଧୀରେ,
ଅନୁସରି ସେହି ଗାନ
କରି ମନେ ଏକ ଧ୍ୟାନ,
ଅବଶେଷେ ବସିବ ସେ ଗିରି ଉଚ୍ଚ ଶିରେ ।

ଦେଖି ଚନ୍ଦ୍ର-ସ୍ବରୁ ଅଙ୍ଗ
ଲଭିବାକୁ ତା'ର ସଙ୍ଗ,
ଧାଇଁ ଧାଇଁ ପଥେ ଶଶା ଗୁଣ୍ଠିଲା ପରାଣ,
କେତେ ଦୂରେ ନଣାପଡି
କାହିଁ ବା ଶଶକ ଗତି,
ପାଇଲା ସେ ଅନ୍ତେ ପରା ସେହି ବକ୍ଷେ ସ୍ଥାନ ।
ଶତ ଶଶି ବଳ ଶୋଭା
କ ବଚନ ମନୋଲୋଭା,
କପରେ ଏହାର ଆଶା ଛାଡ଼ିବ ମୁଁ ନର,
ଗଲେ ପଛେ ଯାଉ ଜୀବ
ଯାହା ହେବ ଦେଖାଯିବ,
ଗିରି-ଶିଖେ ଲମ୍ଫ ରଖି ଗୃଳିବ ମୁକର ।

---

# ଦିଅ ମା ବିଦାୟ !

ନୀଳକଂଠ ଦାସ

●

'ଆହା ରେ ଦଇବ      କି କଲୁ ତୁ ସତେ
ଘର ବୋଲିବାକୁ ନ ଫିଟେ ସ୍ୱର ,
ଏ ନୀଳ ବିପିନ      ଶ୍ୟାମଳ କେଦାର
କେତେ ପୁର-ପଲ୍ଲୀ ହେଉଛୁ ଦୂର !

ଅନାହାରେ ମରେ      କୃଷକ ମଣ୍ଡଳେ
କିଏ ଜାଣୁଛୁ ତା ବେଦନା ତିଳେ !
ରାଜ-ଜନ ବୋଲି      ବଂଚକ ତସ୍କର
ବୁଲୁଛନ୍ତି ଗ୍ରାମ ବିପିନ ତଳେ ।

ଯାଅ ମହାନଦୀ      ବନ୍ଧ ପାରିବାରେ
ଭୟେ ଚୁମ୍ବି ପଦେ ସେ ରାଜପୁର,
ବିଦେଶୀ ତସ୍କର      ଦସ୍ୟୁ ପଦାଘାତେ
ପ୍ରସାର ଉତ୍କଳ ଜନନୀ ଉର ।

ଜନନୀ ଜନନୀ      ବୋଲୁଥିଲି ତୋରେ
ରଖି ନ ପାରିଲି ଗରିମା ତବ,
ଶତ ନଦୀ ଧାରେ      ଲୋତକର ଧାର
ଦେଖି ଯାଉଅଛୁ ଛାଡ଼ି ଏ ଭବ ।

ଶ୍ୟାମଳ କାନନେ ଖେଳାଇଲୁ ମାତ
ବଢ଼ାଇଲୁ ଦେଇ ଜୀବନ ପୟ,
ହେଲା ତୋ ସମ୍ପଦ ତୋହର ଭଣ୍ଡାର
ସନ୍ତାନେ ଘୋଟିଲା ତସ୍କର ଭୟ ।

ଜନମ ଭୂଇଁ ତୁ ଜନନୀ ମୋହର
ଜୀବନେ କେସନେ ଭୁଲନ୍ତି ତୋତେ ?
ଯାଉଛି ବରଜି ଦିଅ ମା' ବିଦାୟ
ଅନ୍ନ ଜଳ ମୋର ସହିଛୁ କେତେ ।

ତୋହର ହୃଦୟ ଚିର ମୁଁ ଖାଇଛି
ପିଇଛି ତୋହର ଜୀବନ ଧାର,
ତେବେ ହେଁ ହୃଦୟେ ରଖିବୁ ଆଦର
ମରଣେ ଏ ମୋର ଶରୀର ଭାର ।

ବିଦେଶ ତ ମୁହିଁ ଯାଇନାହିଁ କେବେ
କେମନ୍ତେ ଜାଣିବି ବିରହ ଖେଦ,
ଘଣ୍ଟେ ଦୂର କେବେ ପାରିଧିରେ ଗଲେ
ଭୁଲି ନ ପାରଇ ତୋର ସଂପଦ ।

ଚିର ଲାଗି ଏବେ ଯାଉଅଛି ମୁହିଁ
ସେ ଦେଶେ, ଯେ ଦେଶୁ ଫେରନ୍ତି ନାହିଁ;
ନିରୟେ କି ନଭେ ସ୍ୱରଗେ କି ତଳେ
କେମନ୍ତେ ସେ କଥା ଜାଣିବି ମୁହିଁ ?

ତୋତେ ଛୁଡ଼ି କେଉଁ ସ୍ୱରରେ ରହିବ
ଅନନ୍ତ-ବିରହ-ଅନଳେ ଜଳି ?
ନାହିଁ କି ନରକ ଏ ବନେ କୁମାର ?
'ଦିଅ ମୋତେ ସେହି ନରକେ ପେଲି ।'

ବିଶାଳ - କଂଟକ ବିସରେ ଦିଶିଲ
ବୀର-ମତ ଫୁଟି ସେ ନରସିଂହେ,
ଶୁଣି ଏ ବଚନ ପ୍ରାଣ ଅସମ୍ଭାଳେ
ଆଲିଙ୍ଗିଲେ ସେହୁ ଧଂକସ ସିଂହେ ।

ଗୁରୁ - ବୀର - ଧର୍ମେ ମିଶିଲ ବିବେକ
ମିଶିଲ କି ସତେ ଲାବଣ୍ୟ ଜ୍ୟୋତି !
ଶ୍ୟାମଳ କାନନେ ଶରଦ ବଉଦ
ଇନ୍ଦ୍ରମାଳେ କିବା ମିଶିଲ ମୋତି !

ଫୁଲ୍ଲ ଶତଦଳ ସତେ କି ପଲକେ
ଚିକ୍କଣ ପଲ୍ଲବେ ପଡ଼ିଲ ଢଳି,
ଗୁହିଁଲ କାନନ ଗୁହିଁଲେ ସଇନ
ବିସ୍ମୟ ମଣ୍ଡିନେ ବଦନ ତୋଳି ।

ବାରୁଣୀ ପାଟଳ ବିଭାସେ ଧଂକସ
ପ୍ରଭାସ ମନ୍ଦିରୁ ଦେଖିଲ ଗୁହିଁ,
ବନ ପ୍ରତିବିମ୍ବ ବିସ୍ମୟ କଂପନେ
ସୁଦୂର ତଟିନୀ ଦେଖାଇ ରହି ।

ସେ ମିଳନେ ଫୁଟି ବିମଳ ପୀରତି,
ହସିଗଲା ବନ, ହସିଲା ଧରା ;
ଉନ୍ମାଦ - ଉଲ୍ଲାସେ ହସିଲେ ସଇନ
ମୁଁ ଜର ଉଠିଲା ଉଚ୍ଛଳ ଧାରା ।

ସେ ଉଲ୍ଲାସ ଧାରେ ବହି ମହାନଦୀ
ଥରି ଥରି ଲୁଣ୍ଠି ଧ୍ୱଂସ-ଚୂଳେ,
ସେ କଂପନ ଲୀଳା ନଚାଇ ସାଗରେ
ଯାଏ ବାରିବାଟୀ ସଉଧ ମୂଳେ ।

ମିଶିଯାଏ ଯାଇ ମହା ପାରାବାରେ
ବିଶାଳ ମହିମା ଅନନ୍ତ ତାନେ ;
ଏକାକାର ପାଇଁ ଭୂମି ଜଳ-ଲାସ୍ୟ
ଗିରି ବନ-ଗଡ଼ ସଉଧାସନେ ।

ଏକାକାର ହେଲା କଟକ ଧ୍ୱଂସର
ଏକାକାର ହେଲା ବିପିନ ବିଲ,
ଏକାକାର ହେଲା ଗିରି ଟଂକ ବେଳା
ଉଚ୍ଛଳେ ମିଶିଲା ଧ୍ୱଂସ ବଳ ।

---

# ଗୋପ ବାଳାର ବ୍ୟଥା

ପଦ୍ମଚରଣ ପଟ୍ଟନାୟକ



କି ଅବା ହେଲା ମିତଲୋ ମୋର ମନଟା କରେ ହୁ ହୁ ଖାଲି,
ଘର କାମରେ ମନ ଲାଗେନା, ଘରଲୋକଙ୍କ ଖାଉଛି ଗାଳି,
କି ଅବା ମୋର ପରାଣ ବ୍ୟଥା,
କି ଅବା ମୋର ମରମ କଥା,
କେହି ବୁଝୁନା, କିଏ ଏ ବିଷ ପରାଣେ ମୋର ଦେଉଛି ଢାଳି,
କିଏ କେଉଁଠି ନୀରବେ ବସି ମୋହନ 'ବଂଶୀ ବଜାଏ ଖାଲି !!

ଦିନ ରାତି କି ବାଜେ ତା' ବଂଶୀ ନାହିଁ କି ତାର ସଞ୍ଜ ସକାଳ,
ଆଖିରୁ ମୋର ନିଦ ନିଏ ସେ ଆହା ରେ ମୋର ମନ୍ଦ କପାଳ!
ଘଡ଼ିକେ ଯାଏଁ ଘରୁ ବାହାରେ,
ବାହାରୁ ପୁଣି ଆସଇ ଘରେ;
ମନଟା ମୋର ଉଚ୍ଚାଟ କରେ କି ଅବା ତାର ବଂଶୀର ସ୍ୱର,
ନିଏ ସେ ମୋ ପରାଣ ମନ ନିଏ ସେ ମୋ ଗୋଧନ ଚର ॥

ସକାଳେ ସେ ତା ଗାଈ ପେଣ୍ଡାକ ଅଡ଼ାଇ ବେଗେ ଚାଲଇ ଢଳେ,
ଝୁମୁକା ଲଗା କଠାଉ ପାଦେ କଷ ଗାମୁଛା କଟିରେ ଝୁଲେ,
ପଡ଼ ରହେ ମୋ ବାସି ପାଇଟି
ଚାହିଁଥାଏ ତା କଳା ରୂପଟି
ଗୋବର ବୋଝ ରହେ ମୋ କାଖେ ଦେହଟା ସତ ରହେ ଗୁହାଳେ
ମନଟା ମୋର ଅଣ ଆୟତ୍ତେ ତାହାରି ସଙ୍ଗେ ଚାଲଇ ଢଳେ ॥

ଗାଈ ଛାଡ଼ୁ ଛାଡ଼ୁ ବାଛୁରି ଛାଡ଼େଁ ପିଏ ସେ ଦୁଧ ନ ପାରେ ଜାଣି
କେତେ ଗଞ୍ଜଣା ସହେଁ ମୁଁ ଘରେ ପିଠିରେ କେତେ ବସେ ଛାଞ୍ଚୁଣି,
ଝରକା ପରି ଥାଏଁ ମୁଁ ଚାହିଁ
ମନଟା ଧାଇଁ ଚାଲଇ କାହିଁ !
ଘଡ଼ି ଘଡ଼ି କେ ଭୁଲି ନ ପାରେ ତା'ର ସେ ମନଭୁଲାଣ ଠାଣି;
କେଡ଼େ ଚିକ୍କଣ ଦେହଟି; ତା'ର ତେଜରେ କଳା ଭ୍ରମର ଜିଣି ॥

ଝାଞ୍ଜି ବେଳରେ କଂସାଏ ଭାତ ନେଇଁ ମୁଁ ବୋଲେ ମୋ ଭାଇପାଇଁ,
ଦୂର କ୍ଷେତରେ ଗଛ ତଳରେ ଦେଖେଁ ସେ ବସେ ଗାଈ ଚରାଇ;
ବଂଶୀଟି ଧରି କି ଗୀତ ଭରି,
ପରାଣ ମନ ନିଅଇ ହରି,
ହାତ ପାଦ ସେ ଥରାଏ ମୋର ହାତରୁ ହାତ ନିଏ ଖସାଇ,
କଣ୍ଟାରେ ଲୁଗା ଲାଗଇ ଝରେ ହସେ ସେ ଆପେ ଲୋକଙ୍କ ହସାଇ ॥

ଶ୍ରାବଣ ମେଘ ଅଜାଡ଼େ ପାଣି ପୂରଇ ବେଗେ ବିଲ ପୋଖରି,
ଦ'କୂଳ ଖାଇ ବହଇ ନଈ ସୁଖ ମୁହଁରେ ହୁଏ ସେ ପାରି,
ମଗର ପରି ବୁଡ଼ଇ ରଙ୍ଗେ,
ଯୁଝଇ ସୁଅ ଉଅଁର ସଙ୍ଗେ,
ନଈ ମଝିରେ ସୁଅରେ ଭାସି ହସଇ କୂଳେ ସାଥିଙ୍କୁ ଠାରି,
କୂଳରେ ଥକା ହୋଇ ମୁଁ ଦେଖେଁ ପ୍ରାଣରେ ଭରୁ ଆନନ୍ଦ ଭରି ॥

ଦୋଳ ପୁନଅଁ ଜହ୍ନରାତିରେ କେତେ ସେ ଗୀତ ଗାଏ ଗହଳେ
କଟିରେ ତା'ର ଝୁଲେ ପାଗୁଡ଼ି ହାତେ ସେ ରଙ୍ଗେ ନଉଡ଼ି ଧରେ
କେତେ ଭଙ୍ଗିରେ ଖେଳେ ସେ ଖେଳ,
କରେ ତା ସାଙ୍ଗ ସାଥୀଙ୍କୁ ମେଳ,
ତା ନାଚ ଗୀତ ଦେଖି କ୍ଷଣକେ ଗାଆଁ ଲୋକଙ୍କ ପରାଣ ଭୁଲେ,
ମୋର ସେ କେହି ନୁହେଁ ଗରବେ ତେବେ ହେଁ ମୋର ଛାତିଟା ଫୁଲେ ॥

ସଞ୍ଜ ବେଳରେ ନଈକୂଳକୁ ମାଠିଆ କାଖେ ଯାଏ ମୁଁ ଧାଇଁ
ଗୋଠରୁ ତାକୁ ଫେରିବା ଦେଖି ମାଠିଆ ମୋର ଜଳେ ଭାସଇ,
କାନ୍ଧରେ ଛଡା ହାତରେ ବଂଶୀ
ଧରି ସେ ଗୋଠୁଁ ଫେରଇ ହସି,
ଗୋଧନ ମେଳେ କୁହାଟ ଛାର କରଇ ମୋର ମନକୁ ବାଇ,
ଦେହରେ ମୋର ବଜୁଳ ଝୁଲେ ଯେବେ ସେ ମତେ ଚାଏ ଅନାଇଁ ॥

ଭାଳଇଁ ମନେ ବସି ନିର୍ଜନେ ପଡ଼ିବ ତା'ର ଚରଣ ଧରି,
କହିବ ମୁହିଁ ଗୋପୀ ଅଭାଗୀ, ତୁମ୍ଭେ ମୋ କୃଷ୍ଣ, ତୁମ୍ଭେ ମୋ ହରି,
ଦିଅ ହେ ଅଶ୍ରା ଚରଣ ତଳେ
ଭାସୁଛି ଦୁଃଖ ଅତଳ ଜଳେ,
ବିପୁଳ ତା'ର ବାହୁ ତଳପେ ମନ ସୁଖରେ ପଡ଼ିବ ଢଳି,
ଘଡ଼ିକେ ପୁଣି ପରମ ଭୟୁ ପରାଣ ମନ ନିଅଇ ହରି ।

କି ଅବା ହେଲା ମିତ ଲୋ ମୋର ମନଟା କରେ ହୁ ହୁ ଖାଲି
ଘର କାମରେ ମନ ଲାଗେ ନା ଘର ଲୋକଙ୍କ ଟାଣୁଛି ଗାଳି,
ପରିବା କାଟି ଆଙ୍ଗୁଳି କାଟେଁ,
ବାଟ ଚାଲି ପଦ ପଦକେ ଝୁଣ୍ଟେଁ,
ଦୁଧ ହାଣ୍ଡିରେ ଲୁଣ କାଠୁଆ ଢଅଇଁ ମନ ଭୁଲରେ ଡାଳି,
ଆଖିରୁ ମୋର ଝରଇ ଲୁହ ଆଜର ମୋର ଏ ଦଶା ଲାଳି ॥

---

# ନିଭୃତ ନିଶୀଥେ

ଲକ୍ଷ୍ମୀକାନ୍ତ ମହାପାତ୍ର



ନିଶାକାଳେ ଏକାକି ମୁଁ ବସି ନିର୍ଜନେ ଏକାସନେ
ବିଜନ ତଟିନୀ ତୀରେ ଚାହିଁଥିଲି ଶୂନ୍ୟ ମନେ ;

ମଳିନ ଦ୍ୱାଦଶୀ ଚନ୍ଦ୍ର ଦୂର ପଥ ବାହି ବାହି
ଅଳସେ ପଶ୍ଚିମ ପ୍ରାନ୍ତେ ଢଳି ଢଳି ପଡ଼େ ଯାଇ ।

ପ୍ରକଟେ ତା ପ୍ରତିଛବି ସରିତର ସ୍ୱଚ୍ଛ ନୀରେ,
କୋମଳ ସଲିଳ-ଶେଯେ ପଡ଼ୁଛି କି ଗଡ଼ି ଧୀରେ !

ଉଜାଗରେ ଭ୍ରମି ଭ୍ରମି ଆସିଛି ସେ ଥକା ହୋଇ,
ହେଲା ଆସି ନିଶି ଶେଷ, ଏବେ ଯାଇ ପଡ଼ୁ ଶୋଇ ।

ବୁଡ଼ି ବୁଡ଼ି ଯାଏ ଚନ୍ଦ୍ର ଅସ୍ତାଚଳ ଶିରୋଦେଶେ,
ଶେଷ ଜ୍ୟୋତି ରେଖା ତାର ହେଲା ଲୀନ ଅବଶେଷେ ।

ମାଡ଼ି ଆସେ ସୀମାହୀନ ଅନ୍ଧକାର ରାଶି ରାଶି
ଘନ ଘୋର ତମିସ୍ରାରେ ବସୁନ୍ଧରା ନେଇ ଗ୍ରାସି ।

କି ଗଭୀର ନୀରବତା ଅଣୁ ପରମାଣୁ ଭରି,
ଦିଗନ୍ତ ଗର୍ଭରେ ବ୍ୟାପି ଜୀବନ୍ତ ମୂରତି ଧରି ।

ସେ ବିରାଟ ଶୂନ୍ୟତାରେ ସତ୍ତା ମୋର ଅବା ଲୁପ୍ତ
ନ ପାରିଲି ଜାଣି ମୁହିଁ ଜାଗ୍ରତ ଅଥବା ସୁପ୍ତ ।

ସହସା ଉଠିଲା ସ୍ଫୂର୍ତ୍ତି କ ସଙ୍ଗୀତ ମନ୍ଦ୍ରସ୍ୱାନ !
ବ୍ୟୋମେ ବ୍ୟୋମେ ପ୍ରସରେ ତା ଅଖଣ୍ଡିତ ସମତାନ ।

ଜନମନ ନୃତ୍ୟରତ ନଭେ ଗ୍ରହ-ତାରାରାଜି,
ଭୂଧର-ଶିଖରେ ତାର ପ୍ରତିଧ୍ୱନି ଉଠେ ବାଜି ।

ସେହି ବିଶ୍ୱ-ସଙ୍ଗୀତର ତାନ ଲୟେ ଅବିରତ
ଉଠଇ ଝଙ୍କାରି ମୋର ପ୍ରାଣତନ୍ତ୍ରୀ ଅନାହତ ।

---

# ପଦ୍ମାବତୀ

ଗୋଦାବରୀଶ ମିଶ୍ର



ଏହି ପ୍ରାୟେ ନିତ୍ୟ ହୁଏ ହଣା ମରା
ଦିନ ବିତିଯାଏ ସିନା,
କା'ର ଜିତା ହେବ, କିଏ ହାରିବ ଲୋ,
ଲବେ ନ ପଡ଼ୁଛି ଜଣା ।

ଦିନେ ଥରହରେ କାଞ୍ଚି ରାଜନଙ୍କୁ
ମନ୍ତ୍ରୀ ଜଣାଇଲା ଯାଇ,
"ତୁମ୍ଭଙ୍କ ବକସି ଅକସ୍ମାତେ ଆଜି
ଗଲେ ଯୁଦ୍ଧେ ପ୍ରାଣ ଖାଇ ।

ଶହେ ଘର ହାତୀ ଭିତରୁ ଆଉ ତ
ଅଛନ୍ତି ତିରିଶି ଘର,
ସାତ ଶହ ଘୋଡ଼ା ପ୍ରାଣ ଖାଇଲେଣି
ଏଥକୁ କିସ ଉତ୍ତର ?

ସଇନ ସାମନ୍ତ କେତେ ଯେ ଗଲେଣି,
ନୋହିବ ତାର କଳନା ;
ଓଡ଼ିଶା ହଜାର ଦଳବଳ ସବୁ
ଅଳ୍ପେ ହୋଇଥିବ ଊଣା ।"

ଶୁଣି ନୃପ ତଳ ଉପରକୁ ଖଣ୍ଡିଁ
କ ଭ୍ରଟଲେଣି କଲେ ବସି;
ବାଇ ହୋଇଗଲେ ଘଣ୍ଟକ ପାଇଁଲେ,
ଆଖି ହୋଇଗଲା ଖୋସି ।

ଉଠିଲେ ରାଜନ ମନୁଁ ଆଉ ଯୁଦ୍ଧ
ଖୁଲବା ବସ୍ତୁର ଗୁଣ୍ଡ,
ନିଜେ ଗଜପତି ଗୁଡ଼ଉଣି ଗଲେ ଲେ
ସନ୍ଧି ବାଇରେଖ ଧରି ।

ଦଇଟନେ ଜେମାଙ୍କୁ ସେ ଗଜପତିଙ୍କ
ହାତେ ସମରପି ଦେଇ,
"ଏତିକରେ ଯୁଦ୍ଧ ବନ୍ଦ କର ନୃପ !"
ଜଣା କଲେ କାଞ୍ଚି ସାଇଁ ।

ସେତିକରେ ଯୁଦ୍ଧ ବନ୍ଦ କରିବାକୁ
ଭୁରିରେ ଅନୁଜ୍ଞା କରି,
ଓଲଟି କହନ୍ତି କାଞ୍ଚି ରାଜାଙ୍କୁ ଲେ
ସେ କାଞ୍ଚିରାଜ - ବଇରୀ,

"ହେନା ନ କରିବ ପିଲା ବୟସର
ମୋର ଅପରାଧ ମାନ;
ଅରି ହେଲେ, ମୋରେ ମଣିବ, ମଣିମା,
ଆପଣା ପୁଅ ସମାନ ।

ଏ କାଞ୍ଚି ରାଇଜେ ନଷ୍ଟ ହେଲେ, ପ୍ରଭୁ ହେ,
ରାଜୁତି କରିବ ଭଲେ;
ମୋ ଦୂର ରାଇଜୁଁ ଲୋଡ଼ା ବେଳେ ଆଣୁ-
ଥିବଟି ଡକାଇ ମୋରେ ।

ଜେମାଙ୍କୁ ରାଜନ, ଯେନ ତ ଯାଉଛି
ସଙ୍ଗତେ ମୋ ରାଇଜକୁ,
ଏତିକ ସ୍ୱାମୁରେ ଦୋଷ ନ ଘେନମ,
ବଶ ମୁଁ ନୋହିବ ତାଙ୍କୁ ।

ଚଣ୍ଡାଳ ହାତ ଏ ଧରିବ ଦୁଲ୍ଲଳୀ,
ପଣ ମୁଁ କରିଛି ରୋଷେ,
ନଜେ ସେହି ହାତ ଧଇଲେ ଏବେ ମୁଁ
ଅଖ୍ୟାତି ଅର୍ଜିବ ଦେଶେ ।

ସାର କଥାଭାଷା ମାଗିଲେ ମେଲାଣି
କାଞ୍ଚିଗଡ଼ ଅଧିପତି ;
ନିରଙ୍କୁଶ ହୋଇ କାଞ୍ଚି ରାଇଜେ ଲୋ,
ଚେଣିକି କଲେ ରାଜୁତି ।

ଦୁଇଶହ ଘୋଡ଼ା, ତିନ କୋଡ଼ି ହାତୀ,
ସଇନ ଅଯୁତ ଗଣି,
ଗଡ଼େ ତାଙ୍କ ପେଷିଦେଲେ ସମ୍ଭାରେ ଲୋ,
ଓଡ଼ିଶା ରାଇଜ ମଣି ।

ଦୁଃଖ କ ନ ହୋଇଥିବ, ଜେମାଙ୍କୁ ସେ
ମନ୍ତ୍ରୀ ହାତେ ସମର୍ପି ଦେଇ,
କହିଲେ "ଏହାଙ୍କୁ ଚଣ୍ଡାଳ ସଙ୍ଗତେ
ଦେବ ହେ ବିଭା କରାଇ ।"

ଉଠି ଆରଦିନ ବଡ଼ି ପାହାନ୍ତରୁ
ଓଡ଼ିଶା ରାଇଜ ଶିରୀ,
ଦେଶେ ଫେରିବାକୁ ବିଜେ ହୋଇଲେ ଲୋ,
ଦଳବଳ ଆଉ ଧରି ।

ଭେଟି ବାଟେ ଚମ୍ପାରେଣୀ ପର୍ବତ,
ବାସ୍ତିକା ରହିଲେ ହିନେ,
ଶିଖେ ଚଢ଼ି ଦେଖା ଦର୍ଶନ କଲେ ଲୋ,
ଉଗନ୍ତ ପ୍ରସନ୍ନ ମନେ ।

ଛୁଡ଼ ଖଣ୍ଡେ ଦୂର ବସାଇଲେ ଗାଆଁ
ବାନ୍ଧୁ ଋଷିକୁଲ୍ୟା କୂଳେ ;
'ପୁରୁଷୋତ୍ତମ ପୁର' ନାଆଁ ତା ଆଜ ଲୋ,
ପ୍ରକଟ ଏ ମହୀତଳେ ।

ସେହି ପୁରୁଷୋତ୍ତମପୁରୁଁ ନରମଣି
ଆଟୋପେ ମେଲାଣି ହୋଇ,
ପୁଣି ଗଲ ଆଉ ଗଲଲେ ବାଟ ଲୋ,
ବଣ ଘାଟି ପଦା ଡେଇଁ ।

କେତେ ଦିନେ ନୃପ ପ୍ରବେଶିଲେ ଆସି
ଆପଣା ଗଡ଼ ଦୁଆରେ,
ଗଡ଼ ଲୋକେ ତାଙ୍କୁ ବନାଇ ନେଲେ ଲୋ,
ପଜ ନାନା ଉପଚାରେ ।

ବୋଦ୍ଧ୍ରମାନେ ଦେଲେ ହୁଳହୁଳି ଘରେ,
ବାଜିଲା ବାଇଦ ଦାଣ୍ଡେ,
ଚୋଆ ଚନ୍ଦନେ ଧୂପ ଜଳିଲା, ଭାଟେ ଲୋ
ପ୍ରଶଂସା ଗାଇଲେ ତୁଣ୍ଡେ ।

ବ୍ରାହ୍ମଣେ ଆସିଲେ କରି ଆଶୀର୍ବାଦ,
ଧନ ବାଣ୍ଟିଦେଲେ ଧର୍ମୀ,
କାଞ୍ଚି ଗଡ଼ ଜିଣି ବାହୁଡ଼ିଛନ୍ତି ଲୋ,
ଓଡ଼ିଶା ମଉଡ଼ମଣି ।

ବସି ସିଂହାସନେ ବୁଝିଲେ ରାଇଜ
ନ୍ୟାୟେ ନୃପ ଗଜପତି,
। । ଓ ଅସେ ପଦ୍ମାବତୀଙ୍କି ଲୋ,
ରଖିଲା ନେଇ ସେ ମନ୍ତ୍ରୀ ।

ଆଣିଥିଲେ ସଙ୍ଗେ ସଉଭାଗ କରି
ଗଣେଶ ଗୋପାଳ ବେନି;
ଗୁଡ଼ିଲ ଗୋଟିକେ ଗଢ଼ା ବେନିକ ଲୋ,
ଶୋଭା କେ ବର୍ଣ୍ଣିବ ପୁଣି ?

ପଥରୁ ହୋଇ ସେ ଜାଇଥିଲା ପ୍ରାୟେ
ଧଣନ୍ତୁ ଉଡ଼ିଲ ନର୍କ,
ଅଙ୍ଗୁଳି ଅବା ବୋନ୍ଧ ପଡ଼ୁଛି ଲୋ,
କୁଳୁ କୁଳୁ ଧରେଣ ଅଣ୍ଡା।

ନୀଳାଚଳେ ବଡ଼ ଦେଉଳ ବେଢ଼ାରେ
ଦକ୍ଷିଣ ଦୁଆର ମୁହେଁ,
କଳ୍ପବଟ ମୂଳେ ରଖିଲେ ଥାପି ଲୋ,
ଗଣେଶ ପ୍ରତିମା ଗୁଏ।

ସେହି କଳ୍ପବଟ ଏ ମର୍ତ୍ତ୍ୟ ମଣ୍ଡଳେ
ପବିତ୍ର ପାବନ ଠିକେ;
ଛାଇତଳେ ତାର ବସିଲେ ଦଣ୍ଡେ ଲୋ,
ସ୍ୱର୍ଗକୁ ଯାଆନ୍ତି ଲୋକେ।

ଏବେ ଚହିଁ ଦନ ବାର ଘଡ଼ି ବସି,
ଖୋଲ ଶାଢ଼ୀ ସନ ଗଣ୍ଡେ
ଗାଆଁ ଗଣ୍ଡା ସାଇ ଚୁଗୁଲି ଏକା ଲୋ,
କା'ର କରୁଛନ୍ତି ଲୁଣ୍ଡେ।

ଶୁଣୁଛନ୍ତି ବସି ଦେଉଳେ ଗଣେଶ
ହେଜ ରଖୁଛନ୍ତି ମନେ;
ଭୁଲ ଦୋଷ ଗୁଣ, ଯମ ରାଜାକୁ ଲୋ,
କହିବେ ମରଣ ଦନେ।

ଗୋପାଳେ ପୁଣି ସେ ସତ୍ୟବାଦୀ ପୀଠ
ଗୁପ୍ତ ବୃନ୍ଦାବନେ ରହି,
ତମାଳ ଛାଇରେ ବଉଳ ଫୁଲେ ଲୋ,
ହେଉଛନ୍ତି ଫୁଲଶାୟୀ।
ତାଙ୍କ କଥା ଆଜ ଏବେ ମୁଁ କହିବ,
ବେଳ ତ ନାହିଁଟି ଆଜ,
ଶୁଣ ମନ୍ତ୍ରୀ ଦରେ ସେ ପଦ୍ମାବତୀ ଲୋ,
କାନ୍ଦ ପଡ଼ିଗଲେ ରାଜ।
କହିଲେ ବିଧାତା, ଏହି ଦଶା ସତେ
ଲେଖି କି ଥିଲୁ କପାଳେ ?
ଜୀବ ଆଉଁ ପୁଣି ହାତଗଣ୍ଠି ମଞ୍ଚେ
ପଡ଼ିବ ଚଣ୍ଡାଳ ଭୁଲେ ?"
କେତେ ଦିନରୁ ସେ ଜଗନ୍ନାଥଙ୍କର
ହୋଇଛି ଗୁଣ୍ଡିଚ୍ଚା ବିଜେ,
ସୁନା ଝାଡ଼ୁଣୀରେ ଛେରା ପହରା ଲୋ,
କରନ୍ତି ରାଜନ ନିଜେ।
ଶ୍ରୀଅଙ୍ଗୁ ବୋହୁଛି ଝାଳ ଗମ ଗମ,
ଶୁଖିଛି ବଦନ ଠାଣି;
ଚଣ୍ଡାଳରୁ ବଳ ଧୂଳ ଧୂସର ଲୋ,
ଓଡ଼ିଶା ମଉଡ଼ମଣି।
ଏତକ ବେଳକୁ କଳା ମନ୍ତ୍ରୀ ଜଣା
"ପ୍ରଭୁ ଆଜ୍ଞା କରଥିଲେ,
ପଦ୍ମାବତୀଙ୍କି ତ ବିଭା ଦେବାପାଇଁ
ଚଣ୍ଡାଳ ପିଲାର ଭୁଲେ।

ନିଜେ ସ୍ଥମୁ ଏବେ ଚଣ୍ଡାଳର କୃତ୍ୟ
କରି ହେଉଛନ୍ତି ପର,"
କହି ଏତେ ଦେଲା ପଦ୍ମାବତୀଙ୍କି ଲୋ,
ଶ୍ରୀ କରେ ବଢ଼ାଇ ଡୋର ।

ବେନି ହାତ ପାତି ନରମଣି ତାଙ୍କୁ
ଝଟେ ପକାଇଲେ ଧରି,
ଲୁହ ଦୁଇ ଧାର ନେତ୍ର ଯୁଗଳୁ ଲୋ,
ବୋହିଗଲା ପାଣି ପରି ।

ପଣ୍ଡା ପଡ଼ିଆରି ଯାତ୍ରୀ ବେଠିଆ ସେ
ଯେତେ ପୁରସ୍ତମ ଲୋକ,
ଦେଲେ ହାତ ତାଳି, ଉଚ୍ଛୁଳି ପଡ଼େ ଲୋ,
ନୀଳାଚଳ ପୁଣ୍ୟଯାକ ।

ଗଜପତି ହୋଇ ସୁବର୍ଣ୍ଣ ଗାଦିରେ
ବସିଲେ ପୁରୁଷ ମଣି;
ଉଆସ ତାଙ୍କର ଉଜ୍ଜଳ କଲେ ଲୋ,
ପଦ୍ମାବତୀ ପାଟରାଣୀ ।

---

# ଶେଫାଳି ପ୍ରତି

କୁନ୍ତଳା କୁମାରୀ ସାବତ



ଶେଫାଳି !

କେଉଁ ଦୂର ତରୁବରେ ଫୁଟିଅଛୁ ଗୋପନେ
ଭୁରୁ ଭୁରୁ ଗନ୍ଧ ତୋର ଭାସିଆସେ ପବନେ,
ବାତାୟନ ପାଶେ ବସି ଲୁହେଁ ନବୋଦିତ ଶଶୀ
ହସି ହସି ସତେ ଉଇଁ ଆସେ ଦୂର ଗଗନେ,
ଭାବାବେଶେ ମୁଗଧ ମୁଁ କି ମଜ୍ଜିଅଛି ସ୍ୱପନେ ।୧।

ଭାବରାଜ୍ୟ ବୁଲେଁ ସତ ହଜିଅଛି ଚେତନା
ଅନ୍ତର ଅନନ୍ତ ରାଜ୍ୟ ପୂରିଅଛି କଳ୍ପନା,
ବିଶାଳ ଏ ବିଶ୍ୱକ୍ଷେତ୍ରେ ଅର୍ଦ୍ଧନିମିଳିତ ନେତ୍ରେ
ଦେଖେଁ ସତେ ଶୋଭାରାଶି ପଡ଼ିଅଛି ଉଛୁଳି,
ଛନ୍ଦିଁ ସୁଧା ତାନ୍ତୁକରେ ଗନ୍ଧେ ଗଙ୍ଗଶିଉଳି ।୨।

ଶାରଦ ଦିନାନ୍ତେ ବସି ବାତାୟନ ପାଶରେ
ବୁଡ଼ିଅଛି ମନ ମୋର କିବା ପ୍ରେମ ରସରେ,
ଆବେଶେ ପୁଲକେ ମୋର ନୟନରୁ ବହେ ଧାର
ହୃଦ ତନ୍ତ୍ରୀ ବାଜିଉଠେ କି ଅମୃତ ସୁସ୍ୱରେ,
ନିମିଷେ ଭାବଇ ମୁଁ ତ ଅଛି ଅବା ସ୍ୱର୍ଗରେ ।୩।

ଯାବୁ ଦିନ ପରିଶ୍ରମ କ୍ଳେଶ କ୍ଲାନ୍ତ ଅଶେଷ
ନାନା ଚିନ୍ତା ବ୍ୟାଧି ଶୋକ କଷ୍ଟ ଦେଲ ବିଶେଷ,
ଯବେ ରବି ଅସ୍ତାଚଳେ ଧୀରେ ଧୀରେ ଚଳିଗଲେ
ସାନ୍ଧ୍ୟ ଗାଥା ଗାଇ ପକ୍ଷୀ ଫେରିଲେ ସ୍ୱ-ସଦନେ,
ତମୋରାଶି ବୋଲିଦେଲ ନିଶା ଧରା ଆନନେ ।୪।

ନୀଳ ନଭ ମଣ୍ଡି ଧୀରେ ହସି ଦୀପ୍ତ ଲୋଚନେ
ଦେଖା ଦେଲେ ଶତ ଶତ ତାରା ଜ୍ୟୋତି ବସନେ,
ଅଙ୍ଗେ ବୋଳି ସୁଧାରାଶି ଶଶାଙ୍କ ଉଇଁଲା ଆସି
ଝରି ଝରି ପଡ଼ିଲା କି ଭୁବନରେ ଅମୃତ,
ସତେ କି ଧରଣୀରାଣୀ ଦୁଃଖ ହେଲା ବିସ୍ମୃତ ।୫।

ରବି ବିରହରେ ଧନୀ କାନ୍ଦିଥିଲା ମଉନେ
ଅନ୍ଧକାରେ ନତ କେବେ ବିଷାଦିତ ବଦନେ,
ବନ୍ଧୁ କି ଆସିଲା ଉଇଁ ସୁଧଣ୍ଣ ଚୁମ୍ବିଲା ଭୂଇଁ
ହସିଲା କି ବସୁମତୀ ସ୍ମରୁ ଶୁଭ୍ର ଦୁକୂଳେ,
ଫୁଟିଲୁ ଶେଫାଳି ଋଦ୍ଧ ତୁ କି ପ୍ରେମ ଆକୁଳେ ।୬।

ଶେଫାଳି !
କ୍ଷୁଦ୍ର ତୋର ତନୁ ତହିଁ ଭରା ଏତେ ଅମୃତ !
ବିଶ୍ୱ ଲୀଳା କେ ବୁଝିବ ଜ୍ଞାନାତୀତ ଅଦ୍ଭୁତ,
ଗୋପନେ ଫୁଟିଛୁ ଦୂରେ ତରୁପତ୍ର ଗହଳରେ
ତଥାପି ତୋ ବାସେ ମୋର ପ୍ରାଣ ହୁଏ ଆକୁଳ,
କହ କେଉଁ ଶିଳ୍ପୀ ତୋତେ ଗଢ଼ି ଅଛି, ରେ ଫୁଲ ।୭।

କି କୋମଳ କି ଲଳିତ କି ମଧୁର ସୁରଭି
କର୍କଶ କୁତ୍ସିତ ପଛେ ଶୋଭେ କଳ୍ପ ଅଟବୀ,
ବୃକ୍ଷ ପତ୍ର ଗଣି କୋଟିଏ ଫୁଲ ଫୁଟେ ଏତେ ଗୁଣେ
ଲୁଟି ଲୁଟି ବାସେ ତୋର ମୁଗଧ କରନ୍ତି ସଂସାର,
ମାତ୍ର ମଧ୍ୟେ ତୁଚ୍ଛ ସୃଷ୍ଟି ବିଧାତାର ବିସ୍ତର ।୮।

ପଙ୍କେ ପଦ୍ମ ଗଢ଼ିଅଛି ବିଧାତାଙ୍କ ଯତନେ
ଶାମୁକା ଗରଭେ ନିହିଅଛି ମୁକ୍ତା ରତନେ,
କଳା ମେଘ କଳେବରେ ସୌଦାମିନୀ ଶୋଭାଧରେ
କଳା କୋକିଳ କଣ୍ଠରେ ପୂରିଅଛି ପୀୟୂଷ,
ତୁଚ୍ଛ ଭବେ ନୋହେ କିଛି କ୍ଷୁଦ୍ର ତୋର ସଦୃଶ ।୯।

ଶେଫାଳି

ମନେ ମନେ ରୂପ ତୋର କଳ୍ପନାରେ ଆମ୍ଭେ କି
ଭାବ ଭାବ କଥା ତୋର ଉଲ୍ଲାସରେ ଭାସେ କି,
ଏକ ରାତ୍ରପାଇଁ ଫୁଟି ସୁବାସେ ଯାଉଛୁ ଲୋଟି
କ୍ଷୁଦ୍ର ତୋର ଜୀବନରେ ସୁ-ମହତ ବିକାଶ,
କ୍ଷୁଦ୍ର ବୋଲି ମୁହିଁ କମା ହୋଇବିରେ ନିରାଶ ।୧୦।

ଶେଫାଳି !

କ୍ଷୁଦ୍ର ମୁହିଁ ଧନ ମୁହିଁ ରେଣୁକଣା ଜଗତେ
ଚାହିଁଲେ ବିଶାଳ ବିଶ୍ୱ ଆସୁଛି କି ପରତେ,
କ୍ଷୁଦ୍ର ହେଲେ ସୁଦ୍ଧା ମୁହିଁ ଅକାରଣେ ଜନ୍ମ ନାହିଁ
ଅନନ୍ତ ବିନାଶ ମୋର ଲେଖା ନାହିଁ କପାଳେ,
ଏକ ରାତ୍ରପାଇଁ ଫୁଟି ଝଡ଼ିଯିବି ସକାଳେ ।୧୧।

ଶେଫାଳି !

ନିତି ପ୍ରାତେ ଦେଖେଁ ପଡ଼ିଅଛୁ ତରୁମୂଳରେ
ଝଳ ଝଳ ହିମ ବିନ୍ଦୁ ଶୋଭେ ଶୁଭ୍ର ଦଳରେ,
ଫୁଟିଲେ ପ୍ରବାଳ ପରି ଗଠିତ ତୋ ତନୁ ଡୋରି
ମନୋନ୍ମାଦକର ଗନ୍ଧିଁ ପୂରିଅଛୁ ସୁବାସ,
କି କୋମଳ କି ମୋହନ କି ଲଳିତ ବିକାଶ ।୧୨।

ଶେଫାଳି !

କି ଯତନେ ଆହରି ମୁଁ ଗୁନ୍ଥେ ମାଳା ଆଦରେ
ପୁଲକିତ ପ୍ରେମ ସ୍ପର୍ଶେ ଦୋଳାଏ ମୋ କଣ୍ଠରେ,
ଧୀରେ ପରଶି ଅଧରେ କେତେ ମୁଁ ତୋତେ ଆଦରେ
କି ବୁଝିବୁ ପ୍ରାଣହୀନ ! ଆକୁଳତା ମୋହର,
କେତେ ପ୍ରେମ କରେ ତୋତେ ଗୋପନେ ମୋ ଅନ୍ତର ।୧୩।

ଶେଫାଳି !

କହେ ତୋ ଆଗରେ ସବୁ, ଭୁକ ବନ୍ଧୁ ଗାବତ
ହେଲେ ମୋ ହୃଦୟ ଶତ ବେଦନାରେ ବ୍ୟଥିତ,
ଆପଣା ମନେ ମୁଁ ଭାଷେ ତୋତେ ଶୁଣାଇବା ଆଶେ
ଶୁଣୁ କି ନ ଶୁଣୁ ଏକା ଜାଣୁ ଭୃଙ୍ଗ ସୁମନ,
ବୁଝୁ କି ନ ବୁଝୁ ମୋର ଶତ ପ୍ରୀତି ବଚନ ।୧୪।

ଶେଫାଳି !

କହି କହି କରୁ ମୁହିଁ ଲଭେ ପ୍ରାଣେ ଆରାମ
ତୋ ବୁଝିବା ନ ବୁଝିବା ମୋର ପକ୍ଷେ ସମାନ,
କହୁଥିବି ଦିବା ରାତି ପ୍ରାଣେ ତ ଲଭିବି ଶାନ୍ତି
ତୋ ଉଦ୍ଦେଶ୍ୟ ଆରେ ଫୁଲ ମୋ ପ୍ରାଣର ଏ ବ୍ୟଥା,
ତୁ ନ ଶୁଣୁ, ଆଉ ଜଣେ ଶୁଣିବ ତ ମୋ କଥା ।୧୫।

ଶେଫାଳି !
ମୋ ଜୀବନ ଶେଷକାଳେ ପଡ଼ିବ ତ ମୁଁ ଝରି
ତୋଳି ନେବ ନାହିଁ କି ସେ ମୋତେ ସସ୍ନେହ ଆଦରି,
ମୋର ଆତ୍ମା-ଫୁଲ ଶୁଭ୍ର ଚରଣେ ଦଳିବା ଠାରୁ
ତାର ପ୍ରିୟ ନିକେତନ ସଜାଇବ ନେଇ ସେ,
ତୋଷିବ ପ୍ରାଣଟି ମୋର କେତେ ପ୍ରେମ ଦେଇ ସେ ।୧୬।

ଶେଫାଳି !
ତୋହ ପରି କ୍ଷୁଦ୍ର ମୁହିଁ ତୋହ ପରି କ୍ଷଣିକ
ହସେ ବାସେ ରସେ ମାତ୍ର ଫୁଟିଅଛୁ ଘଡ଼ିକ,
ମାଟିରେ ମିଶିବୁ ତୁହି ମାଟିରେ ମିଶିବି ମୁହିଁ
ତଥାପି ମୋ ଆତ୍ମା-ଫୁଲ ନ ଯିବରେ ମଉଳି,
ତେଣୁ ଆଶା ବନ୍ଧି ହୃଦ କାଟେ ଗଙ୍ଗଶିଉଳି ।୧୭।

ଶେଫାଳି !
ଶେଷଗନ୍ଧ ନୁହେଁ ମୋର ମୃତ୍ୟୁ କେଉଁ କାଳରେ
ମରିବାକୁ ଫୁଟି ନାହିଁ ଭବ-ତରୁ-ଡାଳରେ,
ଅଛି ରମ୍ୟ ଉପବନ ଯହିଁ ଫୁଟି ଶର ହୃଦ
ଅନନ୍ତ ଅମୃତ ପ୍ରେମ ସୁଧାମୟ ସୁବାସେ,
ମୋହିବ ମୋ ପ୍ରାଣ ପ୍ରିୟ ଦେବତାଙ୍କୁ ଉଲ୍ଲାସେ ।୧୮।

ଶେଫାଳି !
ମୃଣ୍ମୟ ଶରୀର ତୋର ଏତେ ଶୁଭ୍ର ଶୋଭିତ
ନ ଜାଣି ମୋ ଆତ୍ମା-ଫୁଲ କି ସୌନ୍ଦର୍ଯ୍ୟ ଚର୍ଚ୍ଚିତ,
ତୁ ଯାଉ ମୋ ନେଇ ପ୍ରିୟ ତାଙ୍କ ନେତ୍ରେ ହେବ ହେୟ
ମୁଁ କି, କେଉଁ କାଳେ ମୋର ନ ହୁଏ ତ ବିଶ୍ୱାସ,
ଫୁଟିବି ମୁଁ ଚିରଦିନ ନ ହେବ ମୋ ବିନାଶ ।୧୯।

---

# ଯଉବନ ଥରେ ଗଲେ  ଆଉ ଆସେ ନା !

ଅନ୍ନଦାଶଙ୍କର ରାୟ



—୧—

ଆହା, ଯଉବନ ଥରେ ଗଲେ
ଆଉ ଆସେନା !
ବୃଥା ବନ୍ଧୁର ବେଶ ପୂରେ
ଝୁରେ ବାସନା ।

ଫୁଲ ଫୁଟେ ଫୁଲ ଝଡ଼େ
ପୁଣି ଫୁଟେ ସେ,
ପୂରନମା ଶଶୀ ବୁଡ଼େ
ପୁଣି ଉଠେ ସେ ।

ବରଷକେ ଆସେ ପୁଣି
ମଧୁ ଚଇତ
ବରଷଣୀ ଧରଣୀର
ପ୍ରାଣ ଦୟିତ ।

ମାତର ନ ଆସେ ଫେର
ଯଉବନ ଗୋ,
ବାହୁଡ଼ଇ ନାହିଁ ଗୋପେ
ଗୋପଧନ ଗୋ !

ନ ଫେରଇ ଥର ଥର
        ସ୍ନେହର ବୁହାଣି,
ନ ଫେରଇ ଛନ-ଛନ
        ମନ କାହାଣୀ ।

ପରଥମ ପ୍ରଣୟ ଗୋ
        ସରମ ରଙ୍ଗା,
ବିରହ ଘାରଢ ଶ୍ୱାସ
        ମରମ ଭଙ୍ଗା ।

ସୁଖର ବେଦନା ମୋର
        ନୀରବ ପ୍ରୀତି
ନ ଫେରିବ କଣ୍ଠେ ଗୋ
        ତା'ମଧୁ ଗୀତି !

ଅଧର ଅଳକ ଆଖି
        ଆଉ ହସେ ନା,
ଆହା, ଯଉବନ ଥରେ ଗଲେ
        ଆଉ ଆସେ ନା !

—୨—

ଶ୍ରେଷ୍ଠ ଏ ଜୀବନ ବୋଲି
        ଦୁଃଖ ନାହିଁ ତ,
ଯଉବନ ବିହୁନେ ମୋ
        ସୁଖ ନାହିଁ ତ !

ହିମ ନ ହେଉଣୁ ଗାଲେ
ଚପଚ ଚୂମ,
ବାସି ନ ହେଉଣୁ ଗଲେ
ସଜ କୁସୁମ ।

ଯଉବନ ସାଥେ ଯାଉ
ଜୀବନମୋର,
ଜନ୍ମ-ବେଳର ସାଥେ ଆସୁ
ମରଣ ବେଳ ।

ଫୁଲ ଝଡ଼େ, ଫୁଲ ଫୁଟେ
କାନ୍ଦେନା ବନ,
ଶଶୀ ବୁଡ଼େ, ଶଶୀ ଉଠେ
ସହେ ଗଗନ ।

ମଧୁ ଋତୁ ଯାଏ ଆସେ
ଲୁଚ ନ ରହେ;
ଅବନୀ ଉଦାସୀ ହେବ
କାହା ବିରହେ ?

ଲୁଚକାଳି ଖେଳେ ଭବେ
ସବୁ ସୁଷମା,
ହୋଇ ହାତ ଧରାଧରି ନାଚେ
ଆଲୋକ ଅମା ।

ଜଗତେ ହଜେନା କିଛୁ
ହଜେ ଜୀବନେ,
କାହାରେ ବେଦନା ନାହିଁ
ବେଦନା ମନେ ।

ବୃଥା ବଧୂର ସବ୍ୱଣ ପୁରେ
ଝୁରେ ବାସନା,
ଆହା, ସଉବନ ଥରେ ଗଲେ
ଆଉ ଆସେନା !

---

# ସ୍ୱାଗତ ଯୌବନ

ଗୋଦାବରୀଶ ମହାପାତ୍ର



ଆସ ଯଉବନ ! ଗୁପ୍ତ ଚେତନା
ମୁକ୍ତ ଭ୍ରମର ଲାଗି
କବନ୍ଧ ନୀରବ ଗମ୍ଭୀର ଦୁର୍ଗେ
ବନ୍ଧୀ ଉଠିଛି ଜାଗି
ଛନ୍ଦ ଭୁଲିଛି ଦକ୍ଷିଣା-ପବନେ
ଧ୍ୱଂସ-ଆକୁଳ-ବେଗେ
ଆସ ମୋର ସଖା ! ଆସ ଆଜ ଉନ୍ମୁଖେ
ବଜାଇ ବଜାଇ କାଳ ପାହାଡ଼ର
ରୁଦ୍ର-ବିଷାଣ ମୁଖେ ।

ଶୁଭୁ ଆଜ ତବ ଦୁନ୍ଦୁଭି ତାନ
ଗଗନ ବକ୍ଷ ଚିରି
ଉଡ଼ୁ ଆଜ ତବ ବଣଧ୍ୱଜ ଧରି
ମୁକ୍ତ ପାଗଳ ଶିଖି ;
ଚମକି ଉଠିଛି ଶିଥିଳ-ଧମନୀ
ଅଜଣା ଲକ୍ଷ୍ୟେ ତା'ର
ଆସ ହେ ବନ୍ଧୁ ! ଆସ ମୋର ଦୁଆର,
କଣ୍ଠେ ଝୁଲାଇ ମୁଣ୍ଡମାଳକା-
କାଳୀ ମାଆର ସେ ହାର ।

ମନ ଖୋଜ ବୁଲେ ଭାଙ୍ଗିବ ତା'ର
ଅର୍ଗଳ ଗଣି ଗଣି,
ଆଗ୍ନେୟ ଗିରି ବକ୍ଷେ ବନ୍ଧିବ
ମୃତ୍ୟୁ ବରଣେ ହସି ;
ଗଗନେ ପବନେ ଭାଷା ଯିବ ତା'ର
ଅନ୍ତର୍ଦ୍ଧାନ ଦେଶେ
ଆସ ମୋର ସଖା ! ଆସ ଉନ୍ମଦ ହାସେ,
ହଲାଇ ଖେଳାଇ ରକ୍ତ-କେତନ
ଶ୍ମଶାନ-'ହୁ' 'ହୁ'-ବେଶେ ।

ବୈଦିକ ପୀଠେ ଯଜ୍ଞ ଫୁଟିବ
ଆସ ପୁରୋହିତ ମୋର
ଅକୂଳ ସାଗରେ ନାଚବ ତୋଫାନ
ଆସ ହେ ପ୍ରଳୟଙ୍କର ;
ସୃଷ୍ଟିର ମହା ଅବସାଦ ପଛେ
ଧକ୍କା ଦଅ ହେ ବାରେ
ଯୌବନ ! ତବ ଉତ୍ପ୍ଳବ-ଅଭିସାରେ,
ଗିରିଚୂଡ଼ା, ଧରା-ଗହ୍ୱର-ଗଣ୍ଡ
ମିଶିଯାଉ ଏକାକାରେ ।

କରେ ଧରି ଆସ ସେନାପତି ମୋର
ଶୂଳପାଣି ଉନ୍ମତ୍ତ
ଗୁମ୍ ଗୁମ୍ ଗୁମ୍ କଂପନେ ତାଁର
ବିଶ୍ୱ-ଧମନୀ ଅଟୁ ;
ଭାଲେ ଜଳୁଥାଉ ଅମ୍ବିକା-ଶିଖା
ବିକଟ ଅଟ୍ଟହାସ
ଧୂର୍ଜଟୀ-ଜଟା-ଚୁମ୍ବିତ-ଉଚ୍ଛ୍ୱାସ
ତବ ସହ ମୋର ମଧୁର ମିଳନ
ସୃଷ୍ଟିର ଅଭିଳାଷ ।

---

# ଉଠା ଦୋକାନୀର ନୋଟିସ

ହରେକୃଷ୍ଣ ମହତାବ



ଯାତ୍ରୀ ଭାଙ୍ଗିଲା ଗହଳ କମିଲା
ସରିଲା ଏକାଠି ମେଳା,
ଦୋକାନ ଉଠାଇ ସେପାରିକି ଯିବ
କୂଳେ ଲାଗିଲାଣି ଭେଳା ।୧।

ବନ୍ଧାବନ୍ଧ କରେଁ ଜିନଷପତ୍ରର
ନାଉରୀ ମାରୁଛନ୍ତି ଡାକ,
ସାଙ୍ଗସାଥି ସବୁ ଗଲେଣି ବାହାରି
ମୋ ଯିବା ହେଲାଣି ପାଖ ।୨।

ନଉକା ଭସାଇ ଜୀବନ ପ୍ରବାହେ
ଆଣିଥିଲି ପଣ୍ୟ କେତେ,
ଖୋଲିଲି ଦୋକାନ ଏ କୂଳ ମେଳାରେ
ବିକିଲି ପାରିଲି ଯେତେ ।୩।

ଅବକର ଯେତେ ରହିଗଲା ଯାହା
ତାକୁ ତ ନେବି ସାଥିରେ,
ଆଉ କିଛି ଯାହା ଏଠି କିଣା ହେଲା
ତାକୁ ବାନ୍ଧିବି ପେଟିରେ ।୪।

ଅଢ଼େଇ ଦିନର ମାତ୍ର ଏହି ମେଳା
ମନେ ହେଲା ବର୍ଷ ବର୍ଷଠୁ,
ମେଲିଲି ଦୋକାନ କଲି କାରବାର
ଭାବିଲି ଏ ଚିର ଦିନର ।୫।

ଆଣିଥିଲି ବହୁ କିସମ ଜିନିଷ
ନ ମିଳେ ଯାହା ଏଠାରେ,
ନୂଆ ଜିନିଷରେ ହଟାଇବାପାଇଁ
କେହି ନଥିଲେ ବଜାରେ ।୬।

କଥା ବୁଲିଗଲା ଗ୍ରାମଆଡ଼ଯାକ
ଦୋକାନ ମୋ ବଡ଼ ସୁନ୍ଦର,
ହୋଇଗଲା ନାମ ଜୁଟିଗଲେ ଆସି
ଗରାଖ ବହୁତ ରଙ୍ଗର ।୭।

ନଗଦ କିଣାଳି ଧାର ଉଧାରିଆ
ସହାୟକ ଉପକାରିଆ,
ଅଳପ ଦିନରେ ଗଢ଼ିଦେଲି ଏଠି
ନିଜର ଗୋଟିଏ ଦୁନିଆ ।୮।

ନଗଦ କିଣାଳି ଆଉ ସହାୟକ
ଭାଗ୍ୟ ଅଭ୍ୟୁଦୟ କାରଣ,
ଧାର ଉଧାରିଆ ଫାଙ୍କିଦେଲେ କେତେ
କଥା କହି କହି ଚିକ୍କଣ ।୯।

ଲମ୍ବା ଲମ୍ବା କଥା   କହିଲେ କେତେକ
ନେବାପାଇଁ ଦ୍ରବ୍ୟ ବାକିରେ,
ଧନ୍ୟ ସେହିମାନେ   ଜାଣନ୍ତି ସେମାନେ
ଧନ ପକାଇବା ଆଖିରେ ।୧୦।

ଦୋକାନ ବାନ୍ଧୁଛି   ଉଠୁଛି ଏଠାରୁ
ତଥାପି ଆସନ୍ତି ଅନେକ,
କିଣିବାକୁ ଦ୍ରବ୍ୟ   ଉଠା ଦୋକାନରୁ
ଧନ୍ୟ ସେମାନଙ୍କ ବିବେକ ।୧୧।

ତେଣୁ ଏ ନୋଟିସ   ଦେଉଛି ସଭିଙ୍କୁ
ହୁଅନ୍ତୁ ସମସ୍ତେ ସଦୟ,
ଉଠା ଦୋକାନୀକୁ   ବନ୍ଧାବନ୍ଧପାଇଁ
ଦିଅନ୍ତୁ ଟିକିଏ ସମୟ ।୧୨।

ଏଠିକାର କଥା   ଏଇଠି ସରିଲା
ଆର ମେଳାପାଇଁ ତିଆରି,
ନ କଲେ ଯେ ମୋର   ସର୍ବନାଶ ହେବ
ଶେଷେ ସିନା ହେବି ଭିକାରି ।୧୩।

---

# ଧରାବତରଣ

ମାୟାଧର ମାନସିଂହ

—୧—

ଚୈତନ୍ୟ-ପୀଠ ପରେ ସ୍ମର ଚକ୍ଷୁ ବିସ୍ମିତ ମିଳନ,
ପ୍ରଥମ ଯୌବନେ ସେ ଯେ ଢେନ ସ୍ୱପ୍ନ ରସୋଚ୍ଛଳ ମନ,
ଆଜି ସଖି ମନେ ପଡ଼େ; ଲଜେ ଲଜେ ଠେକ ଉତ୍ତରୀୟ
କଟାକ୍ଷ-ନୟନ ଦେଇ ଚାହିଁଥିଲ ଦେଖିବାକୁ ପ୍ରିୟ ।

—୨—

ଆଜି ସଖି ପଡ଼େ ମନେ ଜୀବନର ଶେଷ ଧାପେ ଏଇ,
ଜୀବନର ଅନୁଭୂତି, ଜୀବନର ଯାହା ଦିଆଦେଇ,
ସ୍ମୃତିର ଭଣ୍ଡାରେ ବାଛେ ମହାର୍ଘ ସେ କେଉଁ ଅନୁଭବ
ଯା ପାଇଁ ଇଚ୍ଛି ମୁଁ ପାରେ ପୁଣି ଏହି ଧରାରେ ସମ୍ଭବ ।

—୩—

ଆଜି ସଖି, ପଡ଼େ ମନେ ଜୀବନର ନାନା ଅକ୍ଷମତା,
ନାନା ଭ୍ରାନ୍ତି, ନାନା ଅଶ୍ରୁ, କ୍ଷୁଦ୍ର ନେଇ କେତେ ତିକ୍ତ କଥା,
ଜୀବନ ସଂଗ୍ରାମେ ଯେତେ ରକ୍ତ କ୍ଷୟ, ଯେତେ ପରାଜୟ
ସବୁ ସଖି, ପଡ଼େ ମନେ, ତଉ ଆଜି ଖାଲି ସ୍ମୃତିମୟ ।

—୪—

ବିସ୍ମରିଲ କିନ୍ତୁ ସଖି, ଯଉବନେ ପ୍ରଣୟ ମନ୍ଦିରେ
ସେ ଆଦ୍ୟ-ଚୁମ୍ବିବା-ପାଇଁ ଆସିଥିଲ ଯେପରି ମନ୍ଦିରେ,
ସବୁ ଏ ଜଞ୍ଜାଳ ବରି ନେଇଥିଲ ଜୀବନ-କ୍ଷେତ୍ରର
ମଧୁ ଭୋଗିବାକୁ ଦୂର ରସୋଚ୍ଛଳ କଟାକ୍ଷ-ନେତ୍ରର ।

—୫—

ଉଚ୍ଛଳ ଜୀବନ ଯେବେ ଯୌବନର ବାସନ୍ତୀ ଦୁଆରେ
ଜୀବନର ଦୋସରକୁ ଭେଟିବାକୁ କଂପିତ ହିଆରେ,
ଜୀବନର ସାର୍ଥକତା ଦେଖିବାକୁ ତାହାର ନୟନେ
ହେ ସଖି, ଆସୁଚ ମୁଁ କି ବାରମ୍ବାର ଏ ମର୍ତ୍ତ୍ୟ ଅୟନେ ?

—୬—

ଧନ, ମାନ, ପରିବାର, ଜୀବନର-ଆହବେ-ବିଜୟ,
ସବୁ ଆଜ ସ୍ମୃତିତଳେ ହୋଇଯାଏ ଧୀରେ ଧୀରେ ଲୟ,
ସବୁ ଯାଇ ରହିଯାଏ କେବଳ ସେ କେମନ୍ତେ କେଜାଣି
ମୁଗ୍ଧ ଏକ କିଶୋରୀର ଲାଜ-ପ୍ରେମ-ମଧୁର ଗୁହାଣି ।

—୭—

ନିଷ୍ପାପ ସେ, ସ୍ୱପ୍ନମୟ, ରସମୟ, କମଳ ଦି' ଆଖି,
ପ୍ରାଣର ଦି' ବାତାୟନ, ଅନ୍ତରର ସତ୍ୟବାର୍ତ୍ତା ସାକ୍ଷୀ,
ପାଇବାକୁ ସେ ଦୁଇର ପରିପୂର୍ଣ୍ଣ ଆତ୍ମ-ସମର୍ପଣ
ହେ ସଖି, କରୁଛି ମୁଁ କି ଜନ୍ମେ ଜନ୍ମେ ଧନ୍ୟବାଦ ଚରଣ !

# ପୁରୀ ମନ୍ଦିର

କାଳନ୍ଦୀଚରଣ ପାଣିଗ୍ରାହୀ



କାଷ୍ଠ-ପାଷାଣ ଗଠିତ ହେ ନିର୍ଜୀବ ଦେବତା ମୂରତି ।
ଏ ଦେଶ ଶୋଣିତେ ଆଜ୍ଞ ଜାଗ୍ରତ ଯେ ଈଶ୍ୱର ଆରତି
ମାନବର ଶିଳ୍ପକଳା କଳ୍ପନା-ଘଟିତ
ଯୁଗ ଯୁଗ ଧରି ଯାହା ହୋଇଛି ଗଠିତ
ମାନବର ହସ୍ତେ ବନ୍ଧି ରୂପ
ଭଗ୍ୟେ ତାର କରୁଛ ବିଦ୍ରୂପ,
ଅନ୍ତର ଗୁହାରି
ଶୁଣି କି ତାହାରି
ଶୂନ୍ୟ ପ୍ରାଣ
ହେ ପାଷାଣ ?

ନ ଲଭି ସାନ୍ତ୍ୱନା କାହିଁ ଭଗ୍ନପ୍ରାଣ ମାନବ ସନ୍ତାନ
କାଷ୍ଠ ପାଷାଣର ଦେହେ କରଇ ସେ ଦେବତା ନିର୍ମାଣ,
କୋମଳ ମଧୁର ଯାହା କରି ଆରାଧନା
ନୋହେ ଯେଣୁ ଉପଶମ ଅନ୍ତର ବେଦନା
ବ୍ୟାକୁଳ ହୃଦୟେ ଲୋଡ଼େ ସେହୁ
ଦୟା କ୍ଷମା ପାଷାଣର ଦେହୁଁ,
ପାଷାଣର ଗାତ୍ରେ
ମସ୍ତକ ଆଘାତେ
ଅ କା ର ଣ
ଅ ଶ ର ଣ !!

ଜଡ଼ ପାଷାଣ, ମାଗୁନାହିଁ ଶମିବାକୁ ମୋ ମରମଜ୍ୱର,
ଷମିବାକୁ ଅପରାଧ, ଭୁଟିବାକୁ ବ୍ୟର୍ଥତା ଅନ୍ଧାର,
ଲୋଡ଼ୁନାହିଁ ଲଭିବାକୁ ତବ ଅନୁଗ୍ରହ
ଧନ ମାନ ଯଶ ଖ୍ୟାତି ଅଭୟ ହୃଦୟ,
ମୃତ୍ୟୁ ପରେ ମୁକ୍ତି ନାହିଁ ମାଗେ
ବଇକୁଣ୍ଠ ନାହିଁ ଭଲ ଲାଗେ,
ଏ ମର୍ତ୍ତ୍ୟ ଭୁବନ
ମୋ ସ୍ନେହ-ସଦନ
ଏ ଧରଣୀ
ସୁଖ ମଣି !

ଜୀବନର ଯନ୍ତ୍ରଣାରେ ବଞ୍ଚିଯାଏ ମୋର ପ୍ରତିକ୍ଷଣ,
ନାହିଁ ବେଳ କରିବାକୁ ମୁକ୍ତି ଅବା ମୃତ୍ୟୁର ଚିନ୍ତନ,
ଲଭିଅଛୁ ଯେ ସଂପଦ ଏ ମର ଜୀବନେ
ମିଳଇ ସେ କେବେ କେଉଁ ଅମର ଭୁବନେ ?
ଏ ଜୀବନେ ଲଭିଛୁ ଯେ ନିଧି
ତୁଚ୍ଛ କରିଦିଏ ସ୍ୱର୍ଗ ସିଦ୍ଧି,
ଭୋଗିବାକୁ ତାହା
ବେଳ ନାହିଁ, ଆହା
କିବା ଲୋଡ଼ା
ସ୍ୱର୍ଗ ଯୋଡ଼ା ?

ଏ ଧରାର ସୁଖ ଦୁଃଖ ସ୍ନିଗ୍ଧ ରୁକ୍ଷ ସୁନ୍ଦର କୁତ୍ସିତ,
ଅତି ଆଦରର ମୋର, ଏ ଜୀବନେ ଅତି ପରିଚିତ,
କେତେ ଆଶା କେତେ ନିମାର ଅଲଙ୍କାର ଧନ
ଛାଡ଼ ମୂର୍ଖ ନ ଲୋଡ଼ଇ ସ୍ୱରଗ ଭୁବନ
ଜନନୀର ଅମୃତ ସେନେହ
ଲଳିତ କରଇ ଏ ଯେ ଦେହ,
ଆଶିଷ ପିତାର
କଲ୍ୟାଣ ଆଧାର
ଏତେ ପ୍ରାଣ
ଏତେ ଦାନ !

ସକଳ ମମତା ତେଜି ନ ଖୋଜଇ ମୁକତି ମାରଗ
ହୁଅଇ ନାସ୍ତିକ ପଛେ, ନ ଲୋଡ଼ଇ ଅପର ସରଗ,
କି ଆନନ୍ଦ କିମ୍ବା ସେ ସ୍ୱର୍ଗ ପରବାସେ,
ହୁଏ କି ତା' ସୁଷମିତ ଶିଶୁର ସୁହାସେ ?
ସେ ସଙ୍ଗୀତ ପ୍ରିୟାର ନୂପୁରେ
ଅଛି କେଉଁ ବଇକୁଣ୍ଠ ପୁରେ ?
ପ୍ରିୟା-ରୂପ-ଶଶୀ
ସେ କେଉଁ ଉର୍ବଶୀ
ପାରେ ଜିଣି
ଗରବିଣୀ !

ତଥାପି ନମଇଁ ତୋତେ ହେ ନିର୍ଜୀବ କର୍କଶ ପାଷାଣ !
ଘନୀଭୂତ ଏଥି ଯେଣୁ କେତେ ପୁଣ୍ୟ ଶିଳ୍ପୀର ପରାଣ,
ଯେ ରାଜନ ଗଢ଼ିଲା ଏ ପାଷାଣର ଗିରି
ଯେ ବିରାଟ କଳ୍ପନାରୁ ଉଦ୍‌ଭୂତ ଏ ଶିରୀ
ବିଶ୍ୱପାଇଁ କରିଲା ଦାଦନ
ଅନ୍ତରର ବିପୁଳ ବେଦନ,
ହେବାକୁ ନିର୍ବଂଶ
ଲୋଡ଼ିଲା ଅଯଶ
ବଂଶ ଗର୍ବ
କରି ଖର୍ବ ।

ତ୍ୟାଗର ମହିମା ଯେଣୁ ଏ ଦେଉଳ ଘୋଷଇ ପବନେ
ତ୍ୟାଗର ଜୟ ପତାକା ଉଡ଼ାଉଛି ଅନନ୍ତ ଗଗନେ,
ବିରାଟ ଯେ ଆତ୍ମା ଏହି ପାଷାଣେ ନିହିତ,
ଉଦ୍ଦେଶ୍ୟେ ତାହାର ଆଜି ନମ୍ର ମୋର ଚିତ୍ତ
ରକତ ମାଂସର ଯେତେ ହସ୍ତ
ନିର୍ମିଲା ଏ ପ୍ରସ୍ତର ସମସ୍ତ,
ତାହାର ସକାଶେ
ଏ ପାଷାଣ ପାଶେ
ନ ମ ସ୍କା ର
ବାରମ୍ବାର ।

ମାନବର ସୃଷ୍ଟି ଏ ଯେ ମାନବର ଅନ୍ତର ଆରମ୍ଭ,
ନମଇଁ ମୁଁ ତେଣୁ ଏଥି ଜଣାଏଁ ମୋ ବ୍ୟଥାର ଘରଣି;
କାତର ଚିତ୍କାର କେତେ ଅନ୍ତରର ଦୁଃଖ
ଜଡ଼ ଏ ପାଷାଣ ଦେହେ ଭଜଅଛି ମୂକ;
ଆଜ ଏହି ଦେଉଳ ଗହ୍ୱରେ
ଶତ-କଣ୍ଠ ପ୍ରତିଧ୍ୱନି ଥରେ;
ମିଶାଇ ତା' ସଙ୍ଗେ
ଏ ମନ୍ଦର ଅଙ୍ଗେ
କ ଣ୍ଠ ସ୍ୱ ର
ଉଠେ ମୋର ।

ଲୁକ୍‌କାୟିତ ବିଶ୍ୱ ମଧ୍ୟେ ମାନବ ପ୍ରାଣର ଆଶା ଆଦି
ଏ ପାଷାଣ ନିମ୍ନେ ହୋଇ ସ୍ତୂପୀକୃତ ଲଭିଛି ସମାଧି,
ବିରହ-ବଧୂର କେତେ ସୁବର୍ଣ୍ଣ ସ୍ପୃହାର
ସନ୍ତାନ-ହୀନାର କେତେ ଶୋକ-ଅଶ୍ରୁ-ବାର
ହୋଇଅଛି ଏଥି ଘନୀଭୂତ,
ଅନ୍ତରର ବାସନା ଅପୂତ,
କେତେ ନବୀନ ସ୍ୱପ୍ନ
ଲେଉଟିଛି ଅଭଗ୍ନ
ସଙ୍ଗୋପନେ
ଆଶା ମନେ !

ଶ୍ରେଷ୍ଠ ମାନବ-ଅନ୍ତର କେତେ ଏଥି ଆସିଅଛୁ ଧାଇଁ;
ଭକତ ପ୍ରେମ କେତେ ରସ ଉଛୁ ଦେଇଛୁ ବୁହାଇ;
ଚଇଲାଇ ନର୍ତ୍ତବ ଏ ପାଷାଣର ଅଙ୍ଗ
ଜୀବନ ରସର କେତେ ଉଠିଛୁ ତରଙ୍ଗ
କେତେ ଶତ ଜୀବନ୍ତ ଦେବତା
ବିଶ୍ୱପାଇଁ ପ୍ରକାଶିଛୁ ବ୍ୟଥା
ଏ ଶିଳା ବଚନ
ହୋଇଛୁ ପବନ
ଲଭି ଯେଣୁ
ପଦରେଣୁ!

ଆଦର୍ଶ ଯାହାର ମହା ସାମ୍ୟନୀତ ନାହିଁ ଭେଦ-ଜ୍ଞାନ
ମାନବ ଶିଶୁର ଯହିଁ ନାହିଁ ଜାତ-ଦ୍ୱେଷ ଅପମାନ,
କବୀର, ନାନକ, ବୁଦ୍ଧ, ଚୈତନ୍ୟ, ଶଙ୍କର
କଲେ ଯହିଁ ସମାବେଶ ସକଳ ଧର୍ମର
ଲେଖିଲେ ଏ ପାଷାଣର ଗାତେ
'ସକଳ ଯେ ସମାନ ଜଗତେ,
ସବୁ ବଡ଼ ସାନ
ଦୀନ ଧନବାନ
ନତ ମୁଣ୍ଡ
ଏଥି ଛୁଣ୍ଡ।

ଯେତେ କୋଟି ଯାତ୍ରୀ ପଦ ପଡ଼ିଛି ଏ ମନ୍ଦିର ଦୁଆରେ,
ଭବିଷ୍ୟତେ ଯେତେ ପୁଣି ଲାଗିବ ଏ ପାଷାଣ ଦ୍ୱାଆରେ,
ନ ରହିବ ଇତିହାସ ନ ରହିବ ଚିହ୍ନ,
ଏ ପାଷାଣ-ଗାତ୍ର କାହିଁ ନୋହିବ ବିଦୀର୍ଣ୍ଣ ।
କିନ୍ତୁ ସେ ଯେ ବିଶ୍ୱାସ ଭକତି
ତା' ଉଦ୍ଦେଶ୍ୟେ ଜଣାଏ ମୁଁ ନତି
ମାନବ ଜୀବନେ
ଅମୂଲ୍ୟ ଏ ଧନେ
ନ ମ ସ୍କା ର
ବାରମ୍ବାର !

---

# ଶିଶୁ ସୃଷ୍ଟି

ବୈକୁଣ୍ଠନାଥ ପଟ୍ଟନାୟକ

●

ଜଗତର ଶିଶୁ ଆସ ଆସ ମୋର କୋଳେ
ଆସ ଏ ବକ୍ଷେ ପୀରତି ସେନେହ ଖେଳେ,
ଆସ ଆନନ୍ଦ ! ଆସରେ ଜୀବନ ଜଇଁ
ସୃଷ୍ଟିର ଭାଷା ! ସକଳ ଜୀର୍ଣ୍ଣ
ହସି ହସି ଯାଅ ଛୁଇଁ ।

ସେ ହାସେ ଝଲସେ ସୃଷ୍ଟିର ଲୀଳା ଛନ୍ଦ
ସେ ଭାରତୀ ଶୁଣି ମରଇ ମିଥ୍ୟା ଦ୍ୱନ୍ଦ୍ୱ;
ମରଣ ମରଇ ଅସ୍ଥିର ପଦଘାତେ
ଜୀବନ ନୃତ୍ୟ ମନ୍ତ୍ର ଅମର
ଗାଅ ମଙ୍ଗଳ ପ୍ରାତେ ।

ଝର୍ଣ୍ଣେ ରୂପ ମତେ ମୋର ହାହାକାରେ
ମୃତ୍ୟୁ ଗୁହାରୁ ସକଳ ଜୀବନ ସାର—
ଅମୃତ ଗୀତ ଅବାରିତେ ପଡ଼େ ଝରେ
ମନେ ଭାଳେଁ ଅହ୍ନି ନଷ୍ଟାନନେ
ଆଜିଯାଏଁ ହେଲେ ନର ।

ଆସରେ ବକ୍ଷେ ସକଳ-ଜୀବନ-ଆଶା !
ଆସ ମୋ ଜୀର୍ଣ୍ଣ-କାବ୍ୟ-ଆଲୋକ-ଉଷା।
ଛୁନ୍ନ ଯେ ତାର ସେ ପରଶେ ଯାଉ ଯୋଡ଼ି
ସବୁ ବନ୍ଧନ ମରଣର ଭୟ
ଅବହେଳେ ଯାଉ ଖୋଲି।

ନ ଶୁଣିବ ଆଜ ନ ଶୁଣିବ କାର କଥା,
ନ ଗଣିବ କିଛୁ ସଂଗ୍ରାମ କ୍ଷତ ବ୍ୟଥା;
ସକଳ ଆଜ ତୋ ଅର୍ଥବିହୀନ ବାଣୀ
ମର୍ତ୍ତ୍ୟର ଏଇ ଚିର କଂକାଳ
ଯାଉନ୍ତ ରଖିବ ଘୃଣି !

ଭୁଲ ଶୋଚନା ଭୁଲ ସକଳ ଭ୍ରାନ୍ତ
ପୂର୍ଣ୍ଣରେ ଆଜ ଜୀବନ ଛନ୍ଦ ଗୀତି,
ପରଶ ପାଇ ପୂର୍ଣ୍ଣ ! ନୂତନରେ ଝାଲ !
ଆସ ଆନନ୍ଦ ନନ୍ଦ୍ୟ ଜୀବନ
ବକ୍ଷେ ଯାଅ ମୋ ଗୁଲ !

ସକଳ ଜୀର୍ଣ୍ଣ ପୁରାତନ ପଡ଼େ ଝଡ଼ି,
ପଡ଼ୁଷ ପବ ବାତ୍ୟା ନଏରେ ଉଡ଼ି;
ହସେ ପୁଣି ଉଷା ଶୁଭେ ଆଲୋକର ଗାନ !
ନବ ନବ ରୂପେ ପରଶ ଏ ଭୂମେ
ବିକଶିତ ଭଗବାନ।

ହସି ଉଠ ଚିର ଅନ୍ଧାର ଦୀପ ମମ !
ଭ୍ରଷ୍ଟ ଭ୍ରାନ୍ତ ଶ୍ରାବଣ ବଉଦ ସମ;
ନଅ ମୋ ଜୀବନ ସବୁ ସମ୍ବଲ ଧନ,
ନଅରେ ଆଶିଷ !   ସବୁ ମଙ୍ଗଳ—
ଦେବ ହସି ପୁରୀତନ ।

———

# ମୌସୁମୀ

ରାଧାମୋହନ ଗଡ଼ନାୟକ



ତୂର୍ଣ୍ଣ ଗର୍ଭର ହିଲ୍ଲୋଳେ ଆଜ ପୂର୍ଣ୍ଣ ବଳେ
ଧାଇଁ ଆସିଅଛୁ ମୌସୁମୀ ମୂର୍ତ୍ତି ସୃଷ୍ଟି ପରେ ।
ପ୍ରବାହେ ମୋହର କୃଷ୍ଣ ବାଦଲ ଦେଇଛୁ ଖୋଲି;
ମୟୂର କି ମତେ
ଅଲ୍ଲଳତ-କେଣ
ଝଲ୍ଲଳତ-ବେଣ
ଦୈତ୍ୟ ବୋଲି ?
ଚ୍ଛୁଚ କ ମତେ
ଭାବୁଅଛୁ ମୁଁ ଯେ ମନ୍ଦ ଗ୍ରହେ,
ହସି ଦେଉଅଛୁ ବଜ୍ର-ବଜ୍ଳ-ଅଟ୍ଟହାସେ ?
ବରଷି ଦେଉଚ ଭୂମୂଳ କରକା ଖଗ୍ରତର
ମଚାଇ ଦେଉଚ ଅକାଳ ପ୍ରଳୟ-ବରଷା-ଝଡ଼ ।

ଉରନ୍ନ ମତେରେ          ଉରନ୍ନ ମତେରେ
ମ ର୍ତ୍ତ୍ୟ-ଜୀ ବ
ରୁଦ୍ର ପିନା ଏ          ମୂର୍ତ୍ତି ମୋହର
ମୂର୍ତ୍ତି ତ ଶିବ ।
ଜଳ ସୁନ୍ଦର ମନ୍ଥା ସିନ୍ଧୁର ଉରସ ପରେ
ଦୋଳୁଅଛି ମୂର୍ତ୍ତି ହରସ ଭରେ ।

ଊର୍ମି-ସନ୍ଧ୍ୟାର ଚକ୍ଷୁରେ ଚିବୁକେ
ପୀରନ୍ତର ରସ-ହାସ-କୌତୁକେ
ଲଜ୍ଜାଇ ପାଣି,
କହୁ ଉଠୁଥିଲ "ରାଣି ଗୋ ରାଣି !"

ପ୍ରଣୟ-ମୁଗ୍‌ଧା କଳ-ଉଚ୍ଛ୍ୱାସେ
କହୁ ଉଠୁଥିଲ ରସ-ଉଲ୍ଲାସେ,
ପ୍ରିୟ ହେ ପ୍ରିୟ,
ଅନ୍ତର ଦଅ ସେ ମଦିର-ପରଶ, ଅନ୍ତର ଦଅ,
ଲୋଟିପଡ଼ ତା'ର ନଗନ ଜଘନ ବକ୍ଷପରେ
ଫେନ-ହାସ ତା'ର ପିଇ ପିଇ ଓଠ-ଚୁମ୍ବନରେ
ହେଉଥିଲ ରସ-ରଙ୍ଗେ ଭୋଳ,
ଚପଳ ତାହାର ନିଶ୍ୱାସ
ବୁକୁ ବେଦନାର ଉଚ୍ଛ୍ୱାସ
ସହସା ବାଜିଲା ଅଙ୍ଗେ ମୋର ।

ଚଞ୍ଚଳ ମୂର୍ଚ୍ଛି ଚକିତେ ଫେରି,
ଅନାଇ ଦେଖିଲି ଦୃଷ୍ଟି ମେଲି—
ଚ ମାଳ ଚାଳୀର କାନନକା ଗୁଡ଼ ବଳାକାରାଶି
ନଦୀ ସିନ୍ଧୁର ବନ୍ଧୁର ବୁକେ ପଡ଼ୁଛି ଝାସି ।
ଧରଣୀର ତଳ ଝର ହସ୍ତପେ ଉଠୁଛି ଭରି
ଶସ୍ୟ-ଶଷ୍ପ-ପୁଷ୍ପ-ଉଦ୍ୟାନ ଯାଉଛି ଜଳି ।
ଧୂଳିର କୁହେଳି କୁନ୍ତଳ କୁନ୍ତଳ ଅରକୁ ଅର
ଧୂମ୍ର ଧୂସର କରି ଦେଉଅଛି ଗଗନ ତଳ ।

ଶୈବାଳଖର ସୈକତ ବୁକେ ରସର ରେଖା
ଶୁଖି ଯାଇଅଛି—ଯାଉନ ଦେଖା ।
ନୀଳ ସୁନ୍ଦର ଶଇଳପୁଂଜ
ଫୁଲ୍ଲ ବକଚ ଅଟବୀ କୁଂଜ,
ପ୍ରଳୟ ଭଳ
ଦାବ ଦହନରେ ଯାଉଚ ଜଳ ।
ତୃଷ୍ଣା-କାତର ଚାତକ-କଣ୍ଠ ଯାଉଚ ଫାଟି
ଆ କର ଏବେ ଶୂନ୍ୟେ ଚାହିଁଛି ଜୀର୍ଣ୍ଣ ମାଟି ।
ମାଟିର-ଉକତ ଅମ୍ବରେ ଚାହିଁ ବାରକୁବାର
ଛାଡି ଦେଉଅଛି ହା-ହା-କାର ।
ସକଳ ଦେଖି
ମୁହିଁ ନ ଦେଖୁଣୁ ପ୍ରେୟସୀ ମୋହର କହିଲା "ଏ କ ?"
ମୁଁ କହଲ, "ଆଅ, ଚାଲିଲ ଏବେ ।"
ସେ କହୁଉଠିଲା, "ମୁଁ ଯିବ ତେବେ,
ମୁହିଁ କ କେବଲ ଜୀବନର ଭୂମ ନର୍ମମୟୀ ?
ହୋଇ ପାରବନ କର୍ମସହି ?
ହେ ମୋର ପ୍ରିୟ
ସଙ୍ଗେ ନଅ ।"
ବପୁଲ ପୁଲକ-ପରଶ-ଉରେ ମୁଁ ହରଷଭରେ
ପ୍ରିୟାରେ ମୋହର ଆଶ୍ଳେଷି ନେଲ ଉରସ ପରେ ।
ଆଉ ତ କାହିଁ
ଘନ ବନ୍ଧନ ଫିଟିଲା ନାହିଁ ।

ଦଉଟି ଜୀବନ ମିଶିଯାଇ ଅଛି ମିଶ୍ରଣରେ
ଧାଇଁ ଆସିଅଛୁ ମୌସୁମୀ ମୁହିଁ ଧରଣୀ ଘରେ ।
ନମ୍ର ମୁହଇ କମ୍ର ମୁହଇ ମୁହଇ ଧୀର,
ଉଗ୍ର ମୁଁ ଆଜ, ବ୍ୟଗ୍ର ମୁଁ ଆଜ, ଅଗ୍ରସର ।
ସାଗରବକ୍ଷ ବକ୍ଷ ଅଟିଅଛି ଜଳଧାର,
ଦୂର ଦେଶରୁ ଉଡ଼ାଇ ଆଣିଛି ବାଦଲମାଳା ।
ପୀଡ଼ିତ ପ୍ରାଣର ମଙ୍ଗଳ ଲାଗି ଜୀବନ ନେଇ
ଦୁର୍ଦ୍ଦିନ ମୁହିଁ
ସୃଷ୍ଟିର ତଳେ
ଦୁର୍ଦ୍ଦିନ ମୁହିଁ
ଆଣୁଛି ଏଇ··· ।

---

# କୋଣାର୍କ

ସଚ୍ଚିଦାନନ୍ଦ ରାଉତରାୟ



ତୁମେ ଦେଖିଅଛ ଶିଳାରେ ତା'ର ତ
ରମ୍ୟ କଳାର ରୂପ,
ମୁଁ ଦେଖିଛି ତହିଁ କୋଟି କଙ୍କାଳ
ଭଗ୍ନ ବୁକୁର ସ୍ତୂପ

ତୁମେ ଦେଖିଅଛ ଫୁଟିଛି କପର
କଳାର କାଉଁଶ ଲାଗି,
ଲାସିର କଳା ପଦନଖା ପରେ
ସ୍ୱର୍ଣ୍ଣ ଉଷାର ଛବି ।

ଦେଖିଚ କପର କଦରା ଫୁଟିଚ
ପାଷାଣର ମୂକ ଦେହେ,
ଛନ୍ଦ୍ରାଗମନ ଅଳସ ସପନେ
ବୁଡ଼ିଚ ନବଢ଼ୁ ସ୍ନେହେ ।

ତୁମେ ଗୁଣିଅଛ ରସର ଝର୍ଣ୍ଣା
ଝୁରୁ ମଂନ୍ଦିର ତଳେ,
ଗଂଡୂଷ ଭରି ପିଇଚ ପିୟୂଷ
ନଭାଇ ତୃଷ୍ଣାନଳେ ।

ମୁଁ ଫେରିବି ହାୟ୍ ମାନ ବେରସିକ
ତାହାର ସିଂହଦ୍ୱାରୁ,
ପୁଂଜିତ ବ୍ୟଥା ଅବସାଦ ଗୁରୁ
ବନ୍ଧାଅଛି ହୃଦ ଘରୁ ।
ମୂଳଆର ଆଖି ନେଇ—
ମୁଁ ଦେଖିବି ସେଇ ମନ୍ଦିର ରୂପ ବ୍ୟଥାର ଆରତି ଦେଇ ।

ମୁଁ ଦେଖିବି ସେଇ ଶିଳାର କବରେ
କେତେ କାରିଗର ଛାତି,
ତଳେ ତଳେ ହାୟ୍ ଲଭିଲା ସମାଧି,
ସମ୍ବଲ କଷଣ ଛାତି,
କେତେ ମଜଦୁର ଗର୍ଦ୍ଦଭ ପରି
ବହି ବହି ଶିଳାଘର,
ବଙ୍କା କଲେଣି ନିଜ ମେରୁହାଡ଼
ହିସାବ କି ଅଛି ତା'ର ?

କେତେ ଯେ ବଟାଳି, ନିହାଣ, ମୁଗୁର
ରଜାର ହୁକୁମ ମାନି,
କଲା ମୁଗୁନିର ଦେହରୁ ରକତ
ଶୋଷ ଶୋଷ କଲା ପାଣି ।

କେତେ ଯେ ବଢ଼େଇ ମିସ୍ତ୍ରୀ, କମାର
ଶୋଣିତ ଗଳିରେ ମିଳି,
ସାଗରର ଲୁଣି ପାଣି ସେ କଥାକୁ
ଲୁଣ ପରି ଦେଲା ଟିଳି ।

ଦେଖିଲି ଜଗତ ବିରାଟ ଦେଉଳ !
ଘୋଷିଲି ରାଜାର ଜୟ,
ପଂଡିତ କହେ ଦେଶର କୁଆଡ଼େ
ଲେଖା ଏଥି ପରିଚୟ ।

କେ ରସିକ କହେ—ସୁଂଦରୀ ନଟୀ
ଶ୍ଲାପିତ ନୀବୀ-ବଂଧ,
ସ୍ୱତଃ ଶ୍ଳଥ ତା'ର କାଂଚୁଲି ତଳେ
ପଦ୍ମକୋରକ ଛଂଦ !

କିଏ ଦେଖେ ନାଗକନ୍ୟାର ଗଳେ
ରକ୍ତ-ଚ୍ୟୁତ ବନମାଳା,
ଯକ୍ଷ ବଧୂର କବରୀରେ କିଏ
ଶତ ସ୍ୱପ୍ନର ଜ୍ୱାଳା—

ଅନୁଭବେ ନିରନ୍ତର,
ଜାଣିବାକୁ କିଏ ଲୋଡ଼େ କି କେବେ
ଇତିହାସ ମଣିଷର ?

ପରିଜନ କିଏ କେତେ ବା ଜୀବନ
ଯେ ଲାଗି ହୋଇଛି କ୍ଷୟ,
କେତେ ବା ବାଇଶି, କରତ, କୁଠାର
ଲଭିଅଛି ପରାଜୟ ।

କେତେ କ୍ଷୁଧାତୁର ମଣିଷ ଖାଇଛି
କ୍ଷୁଧାରେ ସେଦିନ ମାଟି,
ରମ୍ୟ କଳାର ଦରବାରେ ତା'ର
କିଛି ନାଇ ପରିପାଟୀ !

ନାଇ ତା ଚରଣ-ଲିପି,
ଶିଳ୍ପ ଉହ୍ୟତ, ନାଇ ନାଇ ସେଠି, କଳାକାର ବା ଶିଳ୍ପୀ ।

ଧନ୍ୟ ଅମର ଶିଳ୍ପସ୍ରଷ୍ଟା !
ଧନ୍ୟ ଲଳିତ କଳା !
ରଜାର ସୁନାମ ପ୍ରସ୍ତରର ଲାଗି
କୋଟି ବୁକେ ବାଜେ ଶିଳା ।

ଅମର ହୋଇବ କାଳର କବଳେ
ଯେଣୁ ଜଣକର ନାମ,
ଲକ୍ଷ ବେନାମୀ ଜୀବନରେ ତେଣୁ
ଗଢ଼ା ହେଲା ଶମଶାନ ।

ଏ ଭାବପ୍ରବଣ ଜାତି
ଏବେ ବି ଗରବେ ସ୍ରଷ୍ଟା ତା କବରେ ଫୁଲ୍ଏ ଆପଣା ଗ୍ଭତି ।

କୋଟି କୋଟି ବଣୁ ମହାରଣା ପୁଣି
ଶିବେଇ ସାମନ୍ତ କେତେ,
ଏଇ ମନ୍ଦିର ତଳେ ଶୋଇଛନ୍ତି
କଳାର ଫସଲ ଖେତେ ।

ଗଢ଼ିବାକୁ ଏଇ ମନ୍ଦିର କଲେ
ଶ୍ରମିକ ରକ୍ତଦାନ,
କୃଷକ ଦେଲା ତା କନକ-ଶସ୍ୟ,
ରାଜକୋଷେ ଅବଦାନ ।

ଅଥଚ କଳାର ଦରବାରେ ନାଇ
ତାଙ୍କ ବ୍ୟଥାର ସ୍ଥାନ,
ହାସ୍ୟ ବା ଲୁହ, ଅଥବା କେଉଁଠି
ଫସଲ-କଣ୍ଠର ଗାନ ।

ତୋରଣେ, ତୋରଣେ ନନ୍ଦନ ଶିଖା,
ଯକ୍ଷପୁରୀର ଲତା,
କେଉଁଠି କି ଅଛି ମାଟିର ଶସ୍ୟ,
ଧାନର ବିକଳ କଥା ?

ଆଭିଜାତ୍ୟର ବିବାଦରେ ଯେଠି
ସାଆଁ ତିଆ ଝୁଟ ଝୁଂଟେ,
ନଗ୍ନ ନଟୀର ନଥର ଚରଣ
ଚପଳ ଛନ୍ଦେ ନାଚେ ।

ସେଠି ଅଛି ଖାଲି ଫୁଲର ଫସଲ
ସପନର ମାଳ ଢେଉ,
ହୀରାର ସ୍ୱର୍ଣ୍ଣ ପାହାନ୍ତ ପହରେ,
ପ୍ରମାଣ ତା' ନେଉ ନେଉ ।

କହିଯାଏ ଧରା କାନେ
ଜୀବନର ଯେତେ କ୍ଷତ, ଅପମାନ ଗାଇ ନାଇ କଏ ଗାନେ ।

ରମ୍ୟ କଳାର ଲୀଳା !
କାହୁଁ ତ କହିବ ମଣିଷର କଥା, କହିବାର ଯାହା ଥିଲା ।

---

# ସ୍ୱପ୍ନ ଦେଖୁଛି

ଅନନ୍ତ ପଟ୍ଟନାୟକ



ସେଇ ଜାତିରେ ମୁଁ ଜନ୍ମ ଲଭିଛି ପରା
ଯେ ଜାତି ଜୀବନୁ ପାଶୋର ଯାଇଛି ହସ,
ନୟନେ ଯାହାର ଅସରା ଅଶ୍ରୁଧାରା
ହୃଦୟ-ଶିଳାରେ ଝଗ୍ରହେ ଥକୁଛି ରସ ।

କେସନେ କହୁଚ ସ୍ୱପ୍ନ କରିବ ପେଶା
ସ୍ୱପ୍ନ କାହାଣୀ ଶୂନ୍ୟେ ଝୁଲୁଚ କାହିଁ ?
ମୃତ୍ୟୁ ମଜଲମା ଭଗ୍ନ ଦେଖିଲେ ମୋ ନେସା
ଅନ୍ନ ମୁଠିର ଚିନ୍ତେ ମାତେ ଯେ ହାଇ ।

ମୋ ସମ ଚେତେବେଳେ ସ୍ୱପ୍ନ ଦେଖିଛି କିଏ ?
ଗାଉଛି କଣ୍ଠରେ ପ୍ରଳୟେ ପ୍ରଣୟ ଗୀତି ?
ଅଳସ ବିଳାସେ ଶୋଇ ଯେ ସ୍ୱପନ ଲିଭେ
ନରକ ତାର କି ରଚଇ ସରଗ ଶାନ୍ତି ?

କୁଟୀର ଦୁଆରେ ଫୁଟେରେ ମୋହର ଫୁଲ
ସହର ତଳରେ ଶୋଷରେ ମୋହର ଆଶା,
ବିପଣୀ ବୀଥିରେ ବଣିକ କରେ କି ମୂଲ ?
ଶିଶୁର ଦରେରି କୁହାଟି ଉଠେ ମୋ ଭାଷା ।

କମାର ଶାଳରେ ଅନଳ-ଦୋଳରେ ନିତି
ସ୍ୱପନ ମୋହନ କୁସୁମ ପରଶ ଆଣେ;
ଗହଳ ବଳରେ ପବନ ଉଚ୍ଛଳା ପ୍ରୀତି
ଭିଜାଏ ଜୀବନ ମଧୁର ଅ.ଲୁଅ-ଗଣେ ।

ସ୍ୱପ୍ନ ଦେଖୁଛି ସହର ପଲ୍ଲୀ କୋଳେ
ଚଳନ୍ତି ମଣିଷ ମୃତ୍ୟୁ ବିଜୟୀ ସନ୍ତ,
ତରୁଣୀ ଅନାଏ ସୃଜନ ଆବେଶ ଭୋଳେ
ତରୁଣ ଅଧୁନେ ହାସ୍ୟ ପଡ଼ୁଛି ଝରି ।

ସ୍ୱପନ ଦେଖୁଚି ହିଂସା-ପରଶ ନାହିଁ
ଜାଣେ ନା ଜାତି ମୋ ମାଳିକ ମୂଲିଆ କଥା;
ଦସ୍ୟୁ ବଣିକ ରାଜୁତି ଯାଇଚି କାହିଁ
ସମାନ ସକଳେ, ଉଚ୍ଚ ମଣିଷ ମଥା ।

ଝଳିଲା ଜଏ ସେ ବିଜୁଳି ଲୀଳାର ଛଳେ
ବିଶ୍ୱ ଭୁବନେ ଅଜଣା ଆଲୋକ ବାଣୀ;
ଝଳିଲା ଜଏ ସେ ସାଧନା ସିଦ୍ଧି ବଳେ
ପ୍ରଣବ-ରାଗିଣୀ, ଧୂଳିକ ଚରଣେ ମାନି ।

ସଉଧେ ସଉଧେ ବାଜିଲା ମୁରଲି ବେଣୁ
ବଉଦ-ମହଲେ ନାଚିଲା ତାହାରି ସୁର;
ସମୀରେ ସମୀରେ ଉଜ୍ଜ୍ୱଳ ଆଶାର ରେଣୁ
ନିତ୍ୟ ନୂତନେ ପୂରିଲା ଜୀବନ ପୁର ।

ଏ ମର ମଣିଷ ଅମର ହେଲା କି ଧୀରେ
ଆପଣା ହାତରେ ଆପଣା ଜୀବନ ରଚି,
ମୈତ୍ରୀ-ମୁକୁଟ ଝଲସେ ସକଳ ଶିରେ
ବାହୁରେ ପ୍ରଣୟ-ବଳୟ ଦେଇଛି ଖଚି ।

ସ୍ୱପନ ଦେଖୁଛି-ମୋ ଚକ୍ଷୁଁ ସ୍ୱପନ କିଏ
ଉପାସ ଭୋକରେ ଦେଖିଛି କହିତ ଭଲା ?
ଗରଳ ଉଗାରି ଯେ ଜନ ପରାଣ ନିଏ
ସ୍ୱପନ ଦେଖେ କି ଜଳାଇ ଜୀବନ ଶଳା ।

---

# ପୁରସ୍କାର

କୁଂଜବିହାରୀ ଦାଶ



ଶତ ଗିରି ଶୃଙ୍ଗ ଲଂଘି ଶତ ବନ୍ଧୁ ପଦତଳେ ଗୃପି
ଭୁଲି ନାହିଁ ସେ ପ୍ରଭାତ ସେ ସୁନ୍ଦର ପ୍ରଭାତ ଅଦ୍ୟାପି ।
ଭୁଲି ଜନ୍ମଭୂମି ମାୟା ଫିଙ୍ଗି ଯେବେ ବସ୍ତ୍ର ତିର ଚଳେ
ସେନେହ-ବନ୍ଧନ ଯେତେ, ଜନ୍ମ ହେଲି ବିମୁଗ୍ଧ ଅନ୍ତରେ,
ସିନ୍ଧୁ ନଦୀ ତୀରେ; ଛୁଇଁ ଭାରତର ପୁଣ୍ୟ ତୀର୍ଥ ବାଲି
ଲୁପ୍ତ ହେଲା ଅବସାଦ; ଏକ ବିନ୍ଦୁ ଅଶ୍ରୁ ଜଳ ଢାଳି,
ପ୍ରଣମିଲି ଜ୍ଞାନ-ଗୁରୁ ଭାରତର ଅମୃତ ଆତ୍ମାରେ
ଗୋଧୂଳି ଲଗନେ ଆଜି ସେ ପ୍ରଭାତ ଜାଗେ ବାରେ ବାରେ,
ସଂସାର ବିରାଗୀ
ଆସିଥିଲି ଖାଲି ଜ୍ଞାନ ଲାଗି ।

ସରଳ ଜୀବନ ଉଚ୍ଚ ଚିନ୍ତା ଚିର ଭାରତ ଭୂଷଣ
ମୁଖେ ମୁଖେ ବାକ୍ୟେ ବାକ୍ୟେ ଫୁଟି ଉଠେ ଗଭୀର ଦର୍ଶନ
ଜ୍ଞାନ ଲାଗି ଆତ୍ମବଳି ମହାତ୍ମାର ବିଶ୍ୱ ମିତ୍ର ଭାବ
ହିମାଦ୍ରିରୁ କୁମାରିକା ବୁଲି ଏଇ ଜ୍ଞାନ କଲି ଲାଭ ।
ଏ ବିଦାୟ କ୍ଷଣେ
ଅଶ୍ରୁ ତେଣୁ ଆସଇ ନୟନେ ।

ହେ ଶ୍ରଦ୍ଧେୟ ରାଜାଗଣ, ହସ୍ତୀ ଅଶ୍ୱ ରତ୍ନ ବଇଭବ
ତବ ଉପହାର ରାଶି ଶାନ୍ତ ମୋତେ ଦିଏ ନାହିଁ ଲବ,
ରାଜ ଚକ୍ରବର୍ତ୍ତୀ ସମ ସ୍ନେହ ତବ ହୋଇଅଛି ଧନ୍ୟ
ତା ସଙ୍ଗେ କି ସରି ହେବ ଜଗତର ସବୁ ମୁକ୍ତା ମଣି ?
ଏଇ ଉପହାର ସଙ୍ଗେ ଯେଉଁ ସ୍ନେହ ଦେଇଥିଲ ବାଢ଼ି
ମୁକ୍ତା ନୁହେଁ, ରତ୍ନ ନୁହେଁ, ନେଇଛି ତା ଅନ୍ତରେ ସଜାଡ଼ି।

ଚୀନ ଜାତି ହାତେ
ଦେବ ମୁହିଁ ଅଶ୍ରୁଜଳ ସାଥେ।

ଭାରତ ଦେଇଛି ଧର୍ମ ଚୀନ୍ ତାହା କରିଛି ଗ୍ରହଣ
ଯୁଗେ ଯୁଗେ ବଞ୍ଚିବ ବେନି ଜାତି ସ୍ନେହ-ବନ୍ଧନ,
ଚୀନ୍ ଜାତି ନଇବେଦ୍ୟ ମୋ ଅନ୍ତରୁ ଡାକ ଦେବା ଲଗି
ଆସିଥିଲ ହୁଏନ୍‌ସାଂ ଭାରତର ଚିର ଅନୁରାଗୀ,
ଲୋଡ଼ା ନାହିଁ ତବ ରାଜପ୍ରାସାଦର ଶ୍ରେଷ୍ଠ ଉପହାର
ଦରିଦ୍ର କୁଟୀର ତଳ ପାଇଛି ମୁଁ ସବୁ ପୁରସ୍କାର।

ଲୋଡ଼ା ନାହିଁ କିଛି
ପ୍ରାଣ ଦେଇ ପ୍ରାଣ ମୁଁ ପାଇଛି।

ଯହିଁ ଦ୍ରୁମ ସ୍ନିଗ୍ଧ ଛାୟା, ମୁକ୍ତ ବାୟୁ, ନିର୍ଝର ସଲିଳ
ତୃଣର କୋମଳ ଶଯ୍ୟା ଖଣ୍ଡ ଶୈଳ କନ୍ଦର କୁଟୀର,
ଅନନ୍ତ ପ୍ରକୃତି ପ୍ରାଣେ ଡାକ ଦେଇ ପ୍ରେମ-କୋଳ ପ୍ରାଣ
ବକ୍ଷେ ଧରି କୋଟି ସ୍ନେହ ସୁଧାଧାର ଲଭିବ ନିର୍ବାଣ।

ଉପହାର ନେବ ମୂର୍ଖେ ବୃଥା କମ୍ପା କରୁଛ ଶୋଚନା ?
ଦିଅ ଏକ ବୌଦ୍ଧ ମୂର୍ତ୍ତି କରିବ ମୁଁ ନିତ୍ୟ ଆରାଧନା ।
ଦିଅ କିଛୁ ବୌଦ୍ଧ ଗ୍ରନ୍ଥ ସ୍ୱଦେଶେ ମୁଁ କରିବ ପ୍ରଚାର
ନିର୍ଜନ ବିହାରେ ବସି ଗଢ଼ିବ ମୋ ଚିନ୍ତାର ସଂସାର ।
ସେଇକି ଉପହାର
ହୁଏନ୍‌ସାଂର ଶ୍ରେଷ୍ଠ ପୁରସ୍କାର ।

---

# ଗ୍ରାମ ପଥ

ବିନୋଦଚନ୍ଦ୍ର ନାୟକ

●

ଦୂରରେ ତାଳବଣ ଆକାଶେ ଶୁଣାଏ
ମାଟିର କବିତା କି ସେ
ଏ ଗ୍ରାମର ପଥ ଚାହିଁ ଦିଗନ୍ତେ ମିଶେ
କ୍ଷେତ ପରେ କ୍ଷେତ କାଶ ଫୁଲ ଆଉ
ବେଣାରେ ଜଟିଳ ପାଟ
ପାଟ ପରେ ବଣ ବଣ ପାରିହେଲେ
ମାମୁଁ ଘର ଗାଆଁ ଦିଶେ ।

ପଥର ଏ ପାଖେ ବୁଣା ହଳଡ଼ ଓ ବୁଟ
ଆଗରେ ଗୃହଣ ଚଢ଼ଆ ଗୋରୁର ଗୋଠ
ଶିମୁଳ ଶାଖାରେ ବାହୁନେ କପୋତ
ଉଠ୍ ପୁତ ଉଠ୍
ଉଠ୍ ପୁରିଲାଣି ମାଣ
ଏ ପାଖେ କଇଁର ପୋଖରୀ ଗାଧୁଆ ତୁଠ ।

ଭୁଆସୁଣୀ ମାନେ ପାଦର ପାହୁଡ଼ ଏଥି
ମୁକୁଳା ବେଣୀରେ ପଖାଳେ ଦେଇଣ ମେଥି
ନଣନ୍ଦମା ତାର ଅଧିକ ଚତୁରୀ
ଗାଲରେ ହଳଦୀ ମାଖେ
ହଳଦି ପାଣିରେ ମୁହଁର ଛାଇଟି ଦେଖି ।

ପୋଇ ଶାଗ ଅଗ୍ର ଘାଣି କଙ୍କାରୁରା ଲଟା
ମାଡ଼ି ମାଡ଼ି ଆସି ଛୁଇଁଲଣି ଘର ମଥା
ସଜନାର ଶାଗୁ ଝଡ଼ିପଡ଼େ କେତେ
ଧୂଳି ଶୋଷ କଷି ଫୁଲ
ବାଡ଼ ଦେହେ ପୁଣି ଅପରାଜିତାର ଛଟା ।

ସେଇ ପଥେ ଫେରେ ଗ୍ରାମବଧୂ
ସାଞ୍ଜ ସକାଳ ସ୍ନାହାନ ଏକା
ଧୂଳିରେ ଆଙ୍କି ସଜଳ ଚରଣ ରେଖା,
ମାଆ ବୋଲି ଥରେ ଡାକିବାକୁ ପ୍ରାଣ ଲୋଡ଼େ
ପୃଥ୍ୱୀଙ୍କର ସମ ସହନଶୀଳା ସେ ଅସୀମ କରୁଣାବନ୍ତ
ନୟନେ ଶତେକ ଯୁଗର ବେଦନା ଲେଖା ।

ଏ ପଥେ ଗ୍ରାମର ତରୁଣ ବିଦେଶେ ଯାଏ
ଲେଉଟା ପଥକୁ ନୂତନା ଘରଣୀ
ଆକୁଳେ ଅନାଇଥାଏ
କି ବାରତା ତାରେ ଆଣେ କିଏ ଜାଣେ
ଅଧାର ଲେଖି ଏ କାଳ
ଏ ଗ୍ରାମ ଦେବତା ସେ ବ୍ୟଥା ବୁଝେ କି ହାୟ !

ଏ ପଥରେ ଗ୍ରାମେ ପ୍ରବେଶ ହୁଅଇ ବଧୂ
ବାପର ବୁକୁର ମମତା ମୁଖର ମଧୁ
ପୁଅ ଝିଅ ନାତି ନାତୁଣୀରେ ରଖି
ମଶାଣି ଏ ପଥେ ଫେରେ
ଆସିବା ଜନର ସାକ୍ଷୀ ଏ ପଥ
ଫେରିବା ଜନର ବନ୍ଧୁ ।

ଜହ୍ନ ଏ ପଥେ ଢାଳଇ ରଜତ ମାୟା
କୁମାରୀ ଦଳର ମିଳିତ କଣ୍ଠୁ ସଙ୍ଗୀତ ଉଠେ ଅଧା
ଧାନ କ୍ଷେତରେ ଚଳେ କୃଷକ ତରୁଣୀ ବନି ଶଗୁନ ପାଇଁ
ପ୍ରାନ୍ତର ଡେଇଁ ଧାଏଁ ଦେଖ ଦେଖ
ଭସାଣି ମେଘର ଛାୟା ।

ଧୂଳି ଘର ଛାଡ଼ି ଏ ପଥେ ଚଳଇ
ଶାଶୁଘର ବାଟେ ଝିଅ
ମା'ଆର ପଣତେ ବନ୍ୟା ରଚଇ
ଅମାନିଆ ଆଖି ଲୁହ
ଏ ପଥର ସ୍ମୃତି ରେଖା ଲେଖାଇ
ସେ କେଉଁ ଜନମ କଥା
ଛାତି ଫାଟିଯାଏ କହନେ ତା'ର
ବିଧାତା କିପାଇଁ ଏ ବିଧାନ କଲ କୁହ ।

ଶ୍ୟାମ ପ୍ରାନ୍ତରେ ଉଲଙ୍ଗ ଶିଶୁ ସମ
ଏ ପଥ ଘୂମାଏ ନୀଳ ନଭେ ସଖା
ଛାୟାପଥ ମନୋରମ
ଗ୍ରାମ ଝରଣାରେ ଲଙ୍ଘି ଏ ପଥ
ସରଗ ସୀମାକୁ ଧାଏଁ
ସନ୍ୟାସୀ ସେ କି ଈଶ୍ୱର କରୁଣା ଧନ ।

ବନ୍ଦନା ତଟେ କରଇଁରେ ଗ୍ରାମ ପଥ
ବାଳକ ବେଳର ହେ ମୋ ପ୍ରିୟ ସାଥି;
ଅପୂତ ଦଣ୍ଡବନ୍ତ;
ତରୁଣ ଦିନର ଖେଳ କୁଞ୍ଜ ତୋ
ତନୁ କର୍ପୂର ରେଣୁ
ତୋର ବେଣୁ ବନ ବଟାନେ ମୁଁ ଆଜ
କ୍ଲାନ୍ତ ଦିବସାପନରେ ଉପଗତ ।

ଭିକ୍ଷାଶୀ ପ୍ରାଣ ପୀଡ଼ିତ ମୋଟେ ଅବିରତ
ପାଥେୟ ବିହୀନ ପଥିକ ମୁଁ ମଣେ
ଯାତ୍ରା ଏ ଦୂରବହ ।

ଖେଳ ଓ ଭୁଲାରେ ଶୁଭ୍ର କର ତୋ ତନୁ
ରାମ ନାମ ସତ ମନ୍ତ୍ରେ ଚଳିବ
ତୋ ଶିର ଶ୍ମଶାନେ
କେବେ କାନ୍ଦ କେବେ କାନ୍ଦ ।

---

# ଜୀବନ ଓ ଜ୍ୱାଳା

ବେଣୁଧର ରାଉତ



ସୃଷ୍ଟିର ବେଦନାଗାରେ କାନ୍ଦିବାକୁ କରୁଛି ମୁଁ ମନ,
ଗଳ୍ପରେ ଅନ୍ୱେଷି, ଦେବି ମୋ ଜୀବନେ ସମଗ୍ର ଜୀବନ ।

ମୋର-ବୋଲି ଯାହା ଅଛି ହୁଏତ ସେ ବିବର୍ଣ୍ଣ, ଖଣ୍ଡିତ,
ସମଗ୍ର ବସ୍ତୁର ଏକ ସୂଚୀପତ୍ର, ଛବିଟିଏ ଖାଲି ରେଖାଙ୍କିତ ।

ଅଦ୍ଭୁତ ବୈଚିତ୍ର୍ୟ ତଳେ ଇତସ୍ତତଃ ଜାତି ଜାତି ଜ୍ୱାଳାର ବିଭୂତି,
ଭରନ୍ତୁ ଏ ପ୍ରାଣକୋଷେ; ହୋଇ ପୁଣି କବି ଭବଭୂତି ।

ଗାଆନ୍ତୁ ଜୀବନ-ଗୀତି 'କରୁଣ'ର—ଗଭୀର ସନ୍ଧାନ,
ଜୀବନ ଧର୍ମରେ ଏକ ନୂଆ 'ସୂକ୍ତ', ପ୍ରାଣଭରା ନୂତନ ସନ୍ଧାନ ।

ତେଣୁ ମୁଁ ଲୋଡ଼େନ ଆଜ କେ ତରୁଣୀ ଆକାଶୀ-ଆଖିରେ,
ବ୍ୟଥିତ ଦୁଇଟିମାତ୍ର ଅଶ୍ରୁବିନ୍ଦୁ; ହେମନ୍ତର ନିଭୃତ ରାତିରେ ।

ଅସଂଖ୍ୟ ନୟନ-ତାରା ଆକାଶର ଟୋପା ଟୋପା ଝରାଇଲେ ଲୁହ,
ସର୍ବଂସହା ଧରଣୀରେ, ତହିଁ ପାଏଁ ସମ୍ବେଦନେ ପ୍ରାଣର 'ସମୂହ,
'ଅହଲ୍ୟାପ୍ରତିମା ହୁଅନ୍ତୁ (ତମେ) କି ପ୍ରିୟମଣି, ଆ-ସତ୍ୟବେତାର
ହୁଅନ୍ତୁ ନିର୍ଯ୍ୟାସ ତାର ବନ୍ଦୀ, ମୂକ ଗଭୀର ଜ୍ୱାଳାର;
ଶକୁନ୍ତଳା ପ୍ରତ୍ୟାଖ୍ୟାନେ ଅଭିଭୂତ ଅବାକ୍ ବେଦନା
ପ୍ରିୟଂବଦା ପ୍ରାଣାଧାରେ ହୁଅନ୍ତୁ କି,—ଇଏ ମୋ କାମନା;
ହୁଅନ୍ତେ ରସିକରାଜ ଭଞ୍ଜ କବି ସହକାର ତରୁ,
ନିଷ୍ଫଳ ପ୍ରାଣର ପ୍ରାନ୍ତେ ଝରୁ ଝରୁ ତାଙ୍କର ଅନ୍ତରୁ,

କରୁଣ, କାମନାବାହ୍ନି ଜ୍ୱାଳାରାଶି ପ୍ରେମସୁଧାନିଧି,
କେ ନଥିଲା ଲତାପାଇଁ, ମୁଁ ହୁଅନ୍ତି ଜ୍ୱାଳାର ସନ୍ନିଧି ।

ଅଥବା ପ୍ରବାଳ ଲତା ସାଗରର ନୀଳଲୋକ ତଳେ ଅବିରତ,
ଧାରନ୍ତୁ ଏ ବନ୍ଧ ଯେଉଁ ସୁରଭିତ ମଳୟର ଅମିତ ବିରହ ।

ପ୍ରାଣର ବିଭିନ୍ନ ରାଗେ ଅଭିଳାଷେ ଯେତୁ ଭରେ ଥାଳା,
ଆସନ୍ନପ୍ରସୂତି କେନ୍ଦ୍ର ଯୁବତୀର ହୁଅନ୍ତ ସେ ପ୍ରଥମ ପ୍ରଜ୍ୱାଳା ।
ହୁଅନ୍ତି କାମନାମୟୀ ଉଛଳତା ବିଶ୍ୱକ ରୁଧିର-ହରଣୀ;
କାମାତୁର ସୂର୍ଯ୍ୟ-ଚକ୍ର ଖୋଜ ଖୋଜୁ ମେରୁତଟେ ଶଙ୍କିତା ଅଶ୍ରୁମୀ;
କୋଣାର୍କର ଲାସ୍ୟକାମୀ ଜଡ଼ତାରେ;
ହୁଅନ୍ତି ମୁଁ ଚଞ୍ଚଳତା,—ଦ୍ରୁତ ଛନ୍ଦ ଅଭିଳାଷ ସମସ୍ତ ମୁଦ୍ରାରେ
ଅସୀମ କାଳର ବନ୍ଧ ବେଦନାକୁ, କାମନାକୁ ହସେ ବିଞ୍ଚିଦବା,
ଉଦ୍‌ବିଗ୍ନ ରଭସ ସ୍ରୋତେ ଝଡ଼ପରି; ସେ ଝଡ଼ିଭୁ ହୁଅନ୍ତି ଅବା !
ନିର୍ଜୀବ, ସ୍ଥାବର ଅବା ଜଙ୍ଗମରେ ଯେତେ ଜ୍ୱାଳା ଭରେ
ସେ ବିଚିତ୍ର ସମଗ୍ରତା ଉଚ୍ଛ୍ୱସିତ କରୁ ମତେ ଅନେକ ବର୍ଣ୍ଣରେ,
ଅଜସ୍ର ଜ୍ୱାଳାର ଭରେ ଉଚ୍ଛ୍ୱାସର ଶତ ସମାହାରେ
ହେଉ ମୋ ଜୀବନ ଦୁଃଖୀ, ବ୍ୟାପକ ଓ ବୋଧମୟ ସୃଷ୍ଟିର ବିସ୍ତାରେ ।

---

# ହଜିଲା ଦିନର କଥା

ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)

●

ଆଜି ଆସେ ଫଟୋଗ୍ରାଫରେ ଲୁଚି ଛପି ବିସ୍ମୃତିର ଅନ୍ଧକାର କୋଣୁ
ଅନେକ ସ୍ମୃତିର ରଙ୍ଗ ଗୋଳି ହୋଇ ମନର ସୀମାନ୍ତେ
ଯହିଁରୁ କେତେକ ଆଜି ପାଣିଫାଟି ବିବର୍ଣ୍ଣ ହେଲଣି
ପାଉଁଟି ଆଣିବା ଆଗୁଁ କିଏ ସେ ବା ଯାଉଛି ଉଭାଇ
ପଡ଼ିଅଛି ସିଏ ସବୁ ଅଜ୍ଞାତର ଅନ୍ଧାର ଗୁହାନ୍ତରେ
ଇତସ୍ତତଃ ବିପର୍ଯ୍ୟସ୍ତ, ଏଣୁ ତେଣୁ ଆବର୍ଜ୍ଜନା ମେଳେ ।

ସବୁ ରଙ୍ଗ ମିଶିଅଛି ମୋ ମନର ଅନେକ ଆକରେ
ଆକାଶର ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ ଓ ତାରାର
ଧରଣୀର ଧୂଳି ବାଲି ମଣିଷ ମେଳର
ଫୁଲ ରଙ୍ଗେ ଯାହାସବୁ ସମସ୍ତର ଅସୀମ ଜାଲରେ
ସିଏ ମୋର ଏକାନ୍ତ ନିଜସ୍ୱ, ଅତି ଆପଣାର
ସିଏ ହସ ଲୁହବୋଳା ପ୍ରୀତି ବେଦନାର ।

ସିଏ ମୋର ପ୍ରଥମ ଉନ୍ମେଷ ଜନ୍ମ ଜନ୍ମ ବିସ୍ମୟେ ଚାହିଁବା
ବହୁ ବର୍ଣ୍ଣ ବହୁ ସ୍ୱର ଅର୍ଥ ତାର ମର୍ମରେ ଗୁନ୍ଥିବା
ଧୂଳି ଖେଳ ଗାଆଁ ଦାଣ୍ଡେ ନାରକେଳ ଗଛର ଛାଇରେ
ପୋଖରୀରେ ମାଛ ଧରା ପଙ୍କ ସାଲୁବାଲୁ
କେତେ ଆକଟ ବଚନ କାନ୍ହିଁଗଲ ଅଣ୍ଟାସୂତା ମୋର
କେଉଁଠି ଆସିଲ ଗୁଣ୍ଡ, ଗାଳି ଖାଇ ମଉନେ ରହିଲ ।
ଚାହାଳିରେ ପାଠପଢ଼ା 'ସିଦ୍ଧିରସ୍ତୁ' ଖଡ଼ି ଗୋଟାକରେ
ଅବଧାନଙ୍କର ବେତ ଅନ୍ଧାର କଣରେ ଯାଇ ଉପୁରେ ଲୁଚିବା

ପବନର ସାଇଁ ସାଇଁ, ପୋଖରୀର ଝିକ ଝିକ ସୁନାର ଲହଡ଼ି
ଭିତରେ ଖେଳୁଛନ୍ତି ମାଛ ଚକ ଚକ ରୂପା ପରି ଧାଡ଼ି
ମୁଁ ଶୋଇଛି ମାଆଙ୍କ କୋଳରେ ପୁବଣର ଗୀତ ଶୁଣୁ ଶୁଣୁ
ନିଦରୁ ଉଠି ବୁଝିଲି ଆଖି ମଳାମଳି
ଗାଁକୁ ଆସିଲା ବର ପାଲିଙ୍କିରେ କେତେ ବାଜା କେତେ ବାଣ ଫୁଲ
ବିମାନରେ ଦେଖିଁ ଆସିଥିଲେ ଅମ ଦାଣ୍ଡେ ଭୋଗ ହେଲା
ବସନ୍ତର ଆମ୍ବକଡ଼ି ଅବେର ଉଡ଼ାଇ
ଆଉ ଏକ ବସନ୍ତ ସେ କାନ୍ଦିଗଲା ଯିଏ ମୋତେ
ଦେଇଥିଲା ଆଗ୍ନେୟ ଲାଳସା
ଆତ୍ମହତ୍ୟା କଲା ଅବା କେଉଁ ଦୂର ବିଦେଶ ଭୂଇଁରେ ।

ହେ ମୋର ଶୁଦ୍ଧ ସକାଳ ସମୁଦ୍ର ବା ନରେନ୍ଦ୍ରରେ ସ୍ନାନ
ଏକାଗ୍ର ଗୀତା ଆବୃତ୍ତି, ସ୍ତୋତ୍ର ଉଚ୍ଚାରଣ
ଆଗେ ଚୁଲିଛନ୍ତି ଜେଜେ ହାତେ ହାତେ ତାଳଟିଏ ଧରି
ତା'ପଛେ ଚାଲିଛି ସେଉଁ ଝିକ ପିଲାଟିଏ
ଡେଇଁ ଡେଇଁ କୁନିକୁନି ପାଦ ତା ପକାଇ
ଫେରୁଥିଲା ଗୀତ ଗାଇ ସିଏ—
'ନଈ ପାଣି ନଈକୁ ଯା, ମୋ ଲୁଗା ଶୁଖି ଯା' କହି
ଆମ୍ବ ଗୋଟାଇବା ପାଇଁ ତାହାଙ୍କ ସାଥୀରେ
ବାପାଙ୍କ ପାଖରେ ଶୋଇ ନିଶ୍ଚିନ୍ତରେ ମାରୁଛି ଘଙ୍ଗୁଡ଼ି !
କାନ୍ଦି ଗଲେ ବାପା ମୋର, ଅଜା ଆଈ ଦାଦା ମାମୁଁ ଖୁଡ଼ୀ
ଆଜି ମୁଁ ବସିଛି ଖାଲି ସେଇସବୁ ସ୍ମୃତିକୁ ଜାବୁଡ଼ି ।
ହାରିକେନ ବତିପରି କେବେ ଅବା
ଆପଣାକୁ ପୋଡ଼ୁଛି ମରିବେ ।

ମେଳନ ଯାତ୍ରା ଉତ୍ସବ ଗୀତ ବାଦ୍ୟ ପୂଜା ମହୋତ୍ସବ
ବଡ଼ି,ଝିଙ୍କ ହଇଜାର ଭୟ, ବେଗୀ ହୋଇ ରହିବାରେ ଡାକ୍ତରଖାନାରେ
କାଲି ଥିଲା ଆଜି ନାହିଁ
ସହପାଠୀ କାଲିଯାଏ ଖେଳୁଥିଲା ଫୁଟ୍‌ବଲ୍ ଆମର ସାଥିରେ
ସିଏ ହଠାତ୍ ମରିଗଲା ସେରିବ୍ରାଲ୍ ମେଲେରିଆ ରୋଗି
ସ୍ୱର୍ଗଦ୍ୱାର ଶ୍ମଶାନରେ ତା ସୁନ୍ଦର ଦେହ ଜଳି ଆମ ଆଗେ
ପାଉଁଶ ହୋଇଲା ।
ଆମେ ସବୁ ପିଲାଯାକ ତାର ଲାଗି ଲୁହ ଢାଳିଥିଲୁ ।

ଫୁଟ୍‌ବଲ ଖେଳୁ ଖେଳୁ ଦିନେ ନାକ ଫାଟିଥିଲା ମୋର
ଲଙ୍କା ଆମ୍ବ ତୋଳୁ ତୋଳୁ ଦିନେ ପଡ଼ି ଯାଇଥିଲି ତଳେ;
ଜନହୀନ ବାଲୁକା ପ୍ରାନ୍ତରେ
ଦାଣ୍ଡି ଗଢ଼ି ମିଛେ ମିଛେ ପୂଜା କଲାବେଳେ
ସତରେ ଦାଣ୍ଡି ଆସିଲେ ଦେଖି ଆମେ ପଳେଇଲୁ ଚମକି
ସ୍ମୃତି ମୋର ଓଲଟାଇ ଖାତା···ଓଲଟାଉଛି କେତେ ଚିହ୍ନ
ଭୂଗୋଳ ଓ ଇତିହାସ ସାହିତ୍ୟ ବାହାର ।

ସ୍ମୃତି ଯାଏ ଘୁରେଇ ବୁଲେଇ ହୋଇ ସ୍ୱପ୍ନସାଥେ
ପଞ୍ଚଭୂତ ସ୍ତରେ ସ୍ତରେ ଅରଣ୍ୟେ ପବନେ ଭାସେ
ସମୁଦ୍ର ଲହରି ପରେ ଅବା ଦୂର ଆକାଶର ମାଳେ
ଶ୍ରୀକୃଷ୍ଣ ବଂଶୀର ସ୍ୱରେ
କଛି ଗୋଟେ ହେବାଲାଗି ମଣିଷ ଭିତରେ,
ରହିଅଛି ଯାହା ସବୁ ପେଡ଼ିରେ ସାଇତା ହୋଇ ଖାଡ଼ର ଉପରେ ।

ଉପସ୍ଥିତ ଆଜ କିଛୁ ନିର୍ଦ୍ଧାରିତ ଦକ୍ଷିଣା ନେବାଠେ
ଆପଣାକୁ ନିର୍ଦ୍ଧାରିତ କରି
ବନ୍ଧୁଚର୍ଚ୍ଚା, କିଛି ତର୍କ ଈର୍ଷା ଆଉ ବିଦ୍ୱେଷ ଭିତରେ
ଆନନ୍ଦର ସମାବେଶରୁ ଅସମ୍ପୃକ୍ତ ରହି
ଆପଣାକୁ ଯାନଯୁକ୍ତ କ୍ଷୁଦ୍ର ଏକ ଗହ୍ୱର ଭିତରେ;
ସେ ଯେମିତି ଆଲୁଅରେ ଆସି ପୁଣି ଅନ୍ଧାରରେ ଯିବା
ଜିପ୍‌ରେ ବସି ଯଥା ଜ୍ୟୋତ୍ସ୍ନା ବିହାରରେ
ଶୀତ ଦିନେ ଚନ୍ଦ୍ରମା ରାତିରେ କୋଣାରକ
ବୁଲିଗଲୁ ବେଳେ ।

ସ୍ୱଚ୍ଛପଟେ ଜ୍ୟୋତ୍ସ୍ନା ପୁଣି ତଳେ ଓ ଉପରେ
ତାହାର ଭିତରେ ଯେବେ ଛୁଟିଥିଲା ସେଇ ଦ୍ରୁତ ଯାନ
(ଯନ୍ତ୍ରଣାରେ ସତେ ଅବା ଆର୍ତ୍ତନାଦ କରି)
ଆମେସବୁ ଯାନଯୁକ୍ତ ହୋଇ ତହିଁରେ ବସିଲୁ
ଆମ ଦେହେ ଲାଗିନାହିଁ ଏତେ ଟିକେ ଜ୍ୟୋତ୍ସ୍ନାର ପରଶ
ତଥାପି ଜ୍ୟୋତ୍ସ୍ନାରେ ଆମେ ମନ ଭରି ବିହାର ରଚିଲୁ
ଗାଡ଼ି ଆମ ଛୁଟିଥିଲା ଘଣ୍ଟାକରେ ଷାଠିଏ ମାଇଲ୍—
ଦୃଶ୍ୟ ପରେ ଦୃଶ୍ୟାନ୍ତର
ମୁହୂର୍ତ୍ତର ନାନା ରୂପ
ଅବା ରୂପର ସେ ବିଭିନ୍ନ ମୁହୂର୍ତ୍ତ
ସଂପୃକ୍ତ ସେସବୁ ଯଥା ସିନେମାର ରିଲ୍
ଆଖିରେ ଯା ଲେଖି ହୋଇଯାଏ ।

ସ୍ମୃତି ମୋର ବାନ୍ଧି ରଖେ ଗଛ ବୃଛ-ଗୁଛ ଓ ଆଲୁଅ
ସ୍ମୃତି ମୋର ବ୍ୟାପିଯାଏ ଗ୍ରାମୁଁ ଗ୍ରାମେ ନଗରେ ନଗରେ
ସ୍ମୃତି ମୋର କେମିତି ହୋଇ ରହିଅଛି କେଉଁ ପାତାଳରେ
ସ୍ମୃତି ମୋର ଶୋଇଅଛି ଅଜାଡ ଜଳରେ
ସିଏ ଏକ ମହାନଦୀ ସେତୁ
ଯା' ଉପରେ ମୁଁ ଯାଇଛି ଏ ପୁରୁଁ ସେ ପୁରେ
ଇହ-ଲୋକୁ ଅଜାତର ଅସୀମ ରାଇଜେ
ଯାହାର ସୈକତେ କେତେ ଗୋଟାଇଛି ଚନ୍ଦ୍ରିତଶାମୁକା
କେତେ ଦୀର୍ଘଶ୍ୱାସ ଅବା ସ୍ୱପ୍ନିଳ କବିତା ।
ସିଏ ମୋର ଶ୍ରମ ଆଉ ସାଧନାର, ଆତ୍ମ ନିରୀକ୍ଷାର
ଲଜ୍ଜା ଭୟ ହସ ବା ଲୁହର
ଦେହର ପ୍ରେମାଞ୍ଚ ଲାଗି ଆପଣାକୁ ତିଳେ ତିଳେ ହତ୍ୟା କରିବାର
ସେଇ ସାଗରରେ ବୁଡ଼ି ଆପଣାକୁ ହରାଏ ବା
ଆପଣାର କେତେ ନୂଆ ରୂପ ଦେଖି ନିଏ ।

---

# ମୃଗୟା

ଚିନ୍ତାମଣି ବେହେରା



ସାଙ୍ଗେ ଧରି ମୃତ ଏକ ମୃଗୁଣୀର ଶବ,
ମୃଗୟା-ବିନୋଦୀ ବନ୍ଧୁ, ଅରଣ୍ୟରୁ ଆସିଥିଲେ ଫେରି
ପୌରୁଷ ଦେଖାଇ ମୋତେ କହିଥିଲେ, "ଦେଖ ଆସ କବି
କପରି ଲାଗିଛି ଗୁଳି, ଏକା ଗୁଳିଟେ ଯାଇଅଛି ମରି ।"

ଦେଖିଲି ହରିଣୀ ଏକ ଚମତ୍କାର ଚନ୍ଦ୍ରରଙ୍ଗ ତାର
କେତେ ମୃଦୁ ତାରକାର ଚିହ୍ନ ଗୁଲ ପରେ,
ସହସା ଫାଟିଛି ହୃଦ ବିଷ ହାତ ଗୁଳି ଗୁଳିଟେ ଲାଗି
ହୃଦୟର ରକ୍ତ ଆସି ମିଶିଅଛି ନୀଳ ଆଖିଟିରେ ।

ସେ ନୀଳ ଆଖିରେ କାହିଁ ସାଗରର ବଣାଲତା ଆଜ
ଅବା ନୀଳ ଆକାଶର ବିଦ୍ୟୁତର ପ୍ରୀତି ରଙ୍ଗ ତଳେ
ଭୂଇଁରେ ଶୋଇଛି ଆସି କ୍ଲାନ୍ତ ଏକ ନୃତ୍ୟଶୀଳ ପ୍ରାଣ
ପାଇ ଯେ ନ ଥିଲି ଶାନ୍ତ ଖେଳ ଅରଣ୍ୟର କୋଳେ ।

ଅରଣ୍ୟ-ଦୁହିତା ଏକ ପ୍ରାଣେ ଧରି ପ୍ରୀତି ସରଳତା
ହୁଏ ତ ସେ ଆସିଥିଲା ଖୋଜିବାକୁ ତା' ପୁରୁଷ ସାଥି
କଅଁଳ ଘାଟିରେ ତାର ପିଇଥିଲା କଞ୍ଚା ଘାସ-ମଦ
ହୃଦୟୁ ଛଳେ ତା' ଥିଲା ଆଶା-ପ୍ରୀତି ଭବିଷ୍ୟର ଗୀତି ।

ହୁଏ ତ ତା' ଆଖିତକୁ ନାଲି ସୁରା ଚଢ଼ିଥିଲା ଘେରି
ସେ ସୁରା ହୁଏତ ଥିଲା ବିରହିଣୀ ହୃଦୟର ଆଶା
ଅରଣ୍ୟର ଘାସ-ଦେଶରେ ପୁରୁଷର ମଦଗନ୍ଧ ଖୋଜି
ମୃଗୁଣୀ ସେ ଆସୁଥିଲା ଶୁଣିବାକୁ ପୁରୁଷର ଭାଷା ।

ମାଂସ-ଲୋଭୀ ଗୁଳି ଏକ ଛିନ୍ନ କଲା ହୃଦୟ ତା' ଲବେ
ସହସା ପଡ଼ିଲା ତଳେ ପ୍ରୀତିତ୍ୟକ୍ତ କ୍ଳାନ୍ତ୍ୟେତ ପ୍ରାଣ
ମଣିଷ-ପୌରୁଷ ଯୋଗୁଁ ପୁରୁଷରେ ପାଇଲାନ ଭେଟି
ନ ଥିଲା ମୃଗୁଣୀ ଜାଣି ପ୍ରୀତି ପଥେ ଅଛି ମୃତ୍ୟୁ-ବାଣ ।

ମୃତ ଏ ମୃଗୁଣୀ ଦେଖି ମନେ ହୁଏ ବାରମ୍ବାର ଆଜି
ବିଶ୍ୱାସ ପ୍ରୀତିର ଏକ ଅମାୟିକ ନିଷ୍କଳଙ୍କ ହୃଦ
ଆସିଛି ଯେ ଧରାତଳେ ଗାଇବାକୁ ମୁକ୍ତ ମୈତ୍ରୀ ଗୀତି
ସହସା ଚକ୍ରାନ୍ତେ କାର ବାରମ୍ବାର ହୋଇଅଛି ବଧ ।

ପ୍ରୀତିର ତଟିନୀ ଗୀତି ମୃତ୍ୟୁତର କରିଅଛି ଗ୍ରାସ
ଆଶାର ସ୍ଫୁଲିଙ୍ଗ ଚକ୍ଷୁ ନିଭିଅଛି ଏ ଧରଣୀ ପଟରେ
ଏ ମୃଗୁଣୀ, ଏ ହୃଦୟ ପ୍ରାଣ ଏକ ସ୍ନିଗଧ ଢଳ ଢଳ
ଭୂଇଁ ଶେଯେ ଲୋଟିଅଛି ଅସହାୟ କ୍ଷୁବ୍ଧ ହାହାକାରେ ।

ମୃତ ଏ ମୃଗୁଣୀ ସମ କେତେ ହୃଦ ଦେଶ ଦେଶାନ୍ତରେ
ଅସହାୟ ହୋଇ ଆଜି ଧୂଳି ଶେଯ ନେଉଛନ୍ତି ବରି
ତଥାପି ମଣିଷ ଆଜି ପୌରୁଷତା ନେଇ ଗର୍ବ କରେ,
ନିଜ ଜ୍ଞାତି କ୍ରନ୍ଦନରେ ସଗୌରବେ ହତ୍ୟା ନିତି କରେ ।

ମୃଗୁଣୀର ଶବ ଦେଖି ତୃପ୍ତ ମୋର ବନ୍ଧୁଙ୍କର ମନ
ସ୍ୱୀକାର କରନ୍ତି ତାଙ୍କ ଚମତ୍କାରର ହାତ ଲକ୍ଷ୍ୟ ଭେଦେ
ମୃତ ଏ ମୃଗୁଣୀ କିନ୍ତୁ ମୃତ ନୁହେଁ ଆଜି ମୋର ମନେ
ଅନ୍ୱେଷଣ କରେ ପ୍ରୀତି ରୁଧିରକ୍ତ ମୋ ଅଚଳ ହୃଦେ ।

---

# ବିନିମୟ

ବ୍ରଜନାଥ ରଥ



"ଅଶ୍ରୁ'ର ବନମଧ୍ୟେ
କିଣିଲି ମୁଁ ଏକ ଫୁଲ,
ମନ୍ଦାର ଏକ ଫୁଲ,
ସେହି ଫୁଲଟିକୁ ଫୁଟାଇ ଦେଲି ମୁଁ
ପ୍ରତିଟି ମରମ ତଳେ
ଜାଣେ ନାହିଁ ମୁହିଁ କେହି କେବେ ହେଲେ
ଦେବକି ନାହିଁ ତା ମୂଲ ।

"ରକ୍ତ'ର ବନମଧ୍ୟେ
କିଣିଲି ମୁଁ ଏକ ପକ୍ଷୀ
ଶାନ୍ତିର ଏକ ପକ୍ଷୀ,
ସେହି ପକ୍ଷୀଟିକୁ ଉଡ଼ାଇଦେଲି ମୁଁ
ବିଶ୍ୱର ମହାକାଶେ
ଜାଣେନାହିଁ ସେ କି ନୂତନ ଆଶାର
ବରଷା ଆଣିବ ଡାକି ।

"ସ୍ୱପ୍ନର ବନମଧ୍ୟେ
ତୋଳିଲି ମୁଁ ଏକ ତାରା
ଆକାଶର ଏକ ତାରା,
ସେହି ତାରକାକୁ ଜଳାଇ ଦେଲି ମୁଁ
ମାଟି ପ୍ରଦୀପରେ ମୋର
ଜାଣେନାହିଁ ସେ କି ପ୍ରତିଟି ମରମେ
ଢାଳିବ ଆଲୋକ ଧାର ।

'ହୃଦୟର ବନମଧ୍ୟେ
ଆଣିଲି ମୁଁ ଏକ ନାରୀ
ଅପରୂପା ଏକ ନାରୀ,
ସେହି ନାରୀଟିରେ ଅର୍ଘ୍ୟ ଦେଲି ମୁଁ
ଜୀବନର ସବୁ କିଛି
ଜାଣେନାହିଁ ସେ କି ଅନ୍ତର ମୋର
ବୁଝିଅଛି ଭଲକରି ।

ଅଶ୍ରୁ ଦେଇ ମୁଁ
କିଣିଲି ତ ସେହିଁ ଫୁଲ
ରକ୍ତର ବନମଧ୍ୟେ ମୁଁ ଆଣିଲି,
ଆକାଶର ସେହିଁ ପକ୍ଷୀ;
ସ୍ୱପ୍ନ ଦେଇ ମୁଁ
ତୋଳିଲି ତ ସେହିଁ ତାରା

ହୃଦୟ ଦେଇ ମୁଁ
ଯେଉଁ ଅପରୂପା
ନାଗରେ ଆଣିଲି ଡାକି;
ସେମାନେ କ ମୋର ମାଟି କୁଟୀରକୁ
ସ୍ୱର୍ଗ କରିବେ ସତେ
ବିଶ୍ୱକୁ ମୋର କୁଟୀର କରିବେ ଅବା;
ସକଳ ଦେଇ ମୁଁ ସବୁ ପାଇବାର
ଭରସା ରଖିଛି ମନେ
ଆଶା ଆଲୋକରେ ପଢ଼ିଁ ପଢ଼ିଁ
ଜୀବନ ଗୀତରେ ଶିହରି ଶିହରି
କାଟୁଛି ରାତି-ଦିବା ॥

# ଅଳକା ସାନ୍ୟାଲ

ଗୁରୁପ୍ରସାଦ ମହାନ୍ତି



ତୁମକୁ ବା ହର୍ଚ୍ଛିବାବୁ ଦେଖିଥିଲେ କେବେ
ଜାଣେ ନାହିଁ ଅଳକା ସାନ୍ୟାଲ
ସେତେବେଳେ ଆକାଶରେ ସ୍ୱର୍ଣ୍ଣଚିତା ବାଘ ବା
ହରିଣର ଛାଲ
ଅବା ଥିଲା ଗୋଲ ହୋଇ ହଳଦିଆ ଜହ୍ନର ମଶାଲ ।

ମୁଁ ତୁମକୁ ଦେଖେ ଆଜ ତୁମେ ହଅ ବ୍ଲାଉଜର ନେବଛାମ
ଲୁ' ଦାଗ ତୁମେ ଧୁଅ ସେମିଜରୁ ଗରମ ପାଣିରେ
ତୁମେ ପୁଣି କଥା କୁହ ମୁହଁ ପୋଛି ଟେବୁଲ ସେ ପାଖେ
ତୁମେ ପୁଣି ଉଠି ଆସି ଅନ୍ୟ ବସ ପାଖ ଚଉକରେ ।

ଢ ପହର ଧୂଳି ଉଡ଼େ, ଖାକି ଆଉ ଫିଲଡ଼ଗ୍ରେ ଧୂଳି
ସିଗାରେଟ୍ ଧୂଆଁ ପୁଣି ଘର ହୋଇ ବସିଯାଏ ଜରିଫୁଲ
କାଗଜ ଫୁଲରେ,
କାଉ ଆଉ ବାଦୁଡ଼ିର ଚେଁ ଲୁଁ ମିଶିଯାଏ ଏକାଠି ବାହାରେ
କୋଇଲାର ଧୂଆଁ ପୁଣି ନଶ ମୋଡ଼ି ମୋଡ଼ି ଉଠେ
ରିକ୍‌ସାବାଲା ବାଟ ଯାଏ ଭୁଲି ।

ତୁମକୁ ମୁଁ ଦେଖିପାରେ କୋଠା ସ୍ଲାପ ଟୁମେ ଧୀରେ ଖୋଲ
ତୁମେ ଆସି ନେଇଛି ପଡ ଚନ୍ଥଣାରେ ବେଣୀ ଆଉ ଶାଢ଼ୀ
ଅସଂଯତ
ତୁମେ ପୁଣି ଆସ୍ତେ ଉଠ ଲୁଗାପଟା ଠିକ୍‌ଠାକ୍ କର
ଟାଉନ୍ ହଲ ସଭରେ ମୁଁ ପାଏ ପୁଣି ତୁମର ସାକ୍ଷାତ ।

ତୁମକୁ ବା ସଜିବାକୁ କେବେ ଥରେ ଚିତ୍ରରଥ ଗନ୍ଧର୍ବ ହାତରୁ
ଛଡ଼ାଇ ଆଣିବା ବେଳେ ତୁମେ କଲ ଜୟ ଜୟକାର
ତା'ପରେ ବା ପୁଣି କେବେ ନୂଆଖାଳି ପଠାଣ ବସ୍ତିରୁ
ଭାରତର ସ୍ୱାଧୀନତା ଦେଲ ପୁଣି ଦ୍ୱିଖଣ୍ଡ ନମସ୍କାର ।

ଦ୍ୱିପହରର କ୍ଲାନ୍ତ ହୁଏ ସନ୍ଧ୍ୟା ଆସେ ରେଲପୋଲ ଆଉ
କୋଇଲା ଚୁଲାର ଧୂଆଁ ଦେଖା ଆଉ ଯାଏ ନାହିଁ
ଚୁପ୍‌ଚାପ୍ କାଉ ଓ ବାଦୁଡ଼ି
ସିଗାରେଟ ଧୂଆଁ ହୁଏ ଆହୁର ଜମାଟ ପୁଣି ନର୍ଗିସ ନେଡାଗା
ଫୋଟରେ
ଆକାଶରେ ଜହ୍ନ ପୁଣି ଦେଖାଦିଏ ଅକସ୍ମାତ ଗୋଲ ତା'ର
ତଳ ଓଠ ସ୍ୱଗରେ କାମୁଡ଼ି ।

ମୁଁ ତୁମର ଶୁଣେ ଆଜ ଝଡ଼ ପର ଭାଷଣ ବକ୍ତୃତା
ମୁଁ ଦେଖେ ତୁମର ଦେହ ହଠାତ୍ ଯାଏ କାଦୁଅ ପାଲଟି
ଛିଣ୍ଡା ଚିଠି କାଗଜରେ ତୁମର ଯା ଅବଶିଷ୍ଟ ରହେ
ପବନ ସେତକ ନଏ ସଡ଼କରୁ ସାଉଁଟି ସାଉଁଟି ।

ଭଙ୍ଗା ନୂଆଖାଲିରେ ବା କଲକତା ନୂଆଦିଲ୍ଲୀ ଆଡ଼େ
କାଉ ଆଉ ବାଦୁଡ଼ର ଚେଁ-ଚୁଁ ପୁଣି ଏଠେ ଯିବା ଓ ଆସିବା
କଟକରେ ଗଳି ଗଳି ରାସ୍ତା ଛକରେ ଛକରେ
ଘାଟରେ ପ୍ରସୂତି କଷ୍ଟ ସକାଳର ତରୁଣ ଜନ୍ମ ନେବା ।

ତା ଭିତରେ ତମେ ପୁଣି ପ୍ରେମ କର ଗର୍ଭବତୀ ହୁଅ
ସିନେମାର ହ୍ୟାଣ୍ଡ୍‌ବିଲ ମୁଁ ଦେଖୁଛି ତୁମର ଦେହରେ
ପବନ ତୁମକୁ ଯେବେ ଆସ୍ତେ ନଏ ବାଳରୁ ସାଉଁଣି
ମୁଁ ତୁମକୁ ସ୍ୱପ୍ନ ଦେଖେ ମୋର ଢିଲା ପାଇଜାମା
କାମିଜର ଅମସୃଣତାରେ ।

---

# ଲଣ୍ଡନ

ରମାକାନ୍ତ ରଥ



କେରୋସିନ, କଟୁ ଧୂଆଁ, ବର୍ଣ୍ଣ ଶିଖା ଏବଂ କଟୁ କାଠ
ଏ ସମସ୍ତ ଏକାକାର ଏ ଧାତବ ପରିବେଷ୍ଟନୀରେ
ଏ କଲେଇ ଛତା ଟିଣ ପେଟ ତଳେ ଅଗ୍ନିର ସମୁଦ୍ର
ଭିତର ଭଳି ଜଳୁଅଛୁ ଭୟଙ୍କର କୃଷ୍ଣ ରଜନୀରେ ।
ନଆଁ ଜଳେ ପୋଷା ମାନ, ମାନ ଏଇ ଟିଣର ପଣ୍ୟ,
ସର୍କସର ବାଘପରି ଏ ଦୁର୍ଦ୍ଦାନ୍ତ ନଆଁ ସୁନା ପିଲା,
ସତେ ବା ଏ କଳା କଳା ଟିଣ ସଙ୍ଗେ ପରିଚୟ ନାହିଁ ।
ସତେ ବା ସେ ଜାଣେ ନାହିଁ କପରେ ଏ ଲଣ୍ଡନ ଚାନ୍ଦିଲା ।
ତମେ, ଯିଏ ମୌସୁମୀର ଆଳସ୍ୟକୁ ପତା ତଳେ ଖୁନ୍ଦି
ତୋଳା ସୃଜନ ପାଇଁ ପ୍ରାଣପଣେ ପରିଶ୍ରମ କର,
ଏବଂ ଗଦ୍ୟର ବାକ୍ୟତଳେ ଲେସି ଦେଇଛ ଚଂପକ
ତମେ କେବେ ଦେଖିପାର ପ୍ରଜ୍ୱଳିତ ଅସ୍ତିତ୍ୱ ମୋହର ?
ଅନୁମାନ କରିପାର, ମୁଁ ଜଳୁଛି ତୀବ୍ର ଦରଦରେ
ମିଉଜିଅମ ଧୋତି ଏବଂ ଇସ୍ତ୍ରୀକରା ଅଧା କାମିଜରେ ?

---

# ଇରାଣବର ସଙ୍ଗୀତ

ସୀତାକାନ୍ତ ମହାପାତ୍ର



ଧନୁ ଓ ତୂଣୀର

ଆକାଶର ନୀଳଧନୁ, ମୋ ମନର ତୀର
କଅଁଳା ଭବିଷ୍ୟତର ଡବ ଡବ ଆଖି ଢ'ଙ୍କା
ତାଡ଼ଦିଏ, ଗନ୍ଧ ଖାଲି ସମସ୍ତର ବେଡ଼ାବୁଡ଼ା
କଳବଳ ଗମ୍ଭୀର ଅନ୍ଧାର ।

ଏଇ କ'ଣ ଛଳନାର ବ୍ରତ ଉଦ୍‌ଯାପନ ପ୍ରଶ୍ନେ ?
ଗୋପରୁ ଦ୍ୱାରକା ଯାତ୍ରା, ଶାଂବ ନାଗବେଶ ଆଉ
ଜେଜବଣ ପରେ,
ତୋ ମନର ଅନ୍ତିମ ଉଚ୍ଛ୍ୱାସ,
ସବୁ ଖାଲି ମିଛ ଲାଗେ, ସବୁ ପ୍ରତାରଣା,
ଠିକ ମଣିଷ ସାଥିରେ ଲୁଚକାଳି ଖେଳୁ ଯିବା,
ଏଇ ଶୂନ୍ୟେ ଆକାଶେ ତୋ ଛୁପା ଏ ହସ ।

ତୋର ଯଦ୍ଧ ଜନ୍ମ ନାହିଁ, ମୃତ୍ୟୁ ନାହିଁ
ଇତିହାସ ବାହାରେ ତୋ ସ୍ଥିତି
ତୋ ଲାଗି କାନ୍ଦୁଛି କଅଁ ଯମୁନାର ନେଳ ପାଣି
କଦମ୍ବର ଝରାଫୁଲ, ଗୋବର୍ଦ୍ଧନ ଗିରି,
ବଇଁଶୀର ଦୈନ୍ୟ ତାଳ କୁହର କୁହର !

ଦେବକୀ ଓ ବସୁଦେବ ଆଖି ନଆଁ ଜଳେ
ଜ୍ୱଳନ୍ତ ପିଙ୍ଗଳ ଆଖି,
ଦାନ ଦଏ ମୋର ଦେହ, ମୋର ମନ, ଆତ୍ମାର ଚଳନ୍ତ
ଧୂସର ଅତୀତ ଗ୍ରସେ କାଜିଳିଆ ଜନ୍ମରାତ-ପଥ,
କେତେ ଗୋପାଙ୍ଗନା ଆଖି ଲୁହେ ଦେଇ ଭରି ।
ମନେ ପଡ଼େ ଛଳନାର ଅଭିଷେକ, ରସଲୀଳା
ଯମୁନା ପୁଳିନେ ।

ହଜାଇ ପାଇବା ଆଉ ପୁଣି ହଜାଇବା
ଆମ ଠିକ ଜୀବନରେ ସ୍ୱପ୍ନପଥ, ପ୍ରତ୍ୟୁପଥ ।
ସବୁ ତ ଛଳନା ପ୍ରଭୁ, ସବୁ ମିଛ ଅକାଶ ପୃଥିବୀ,
ଆମକୁ ଭଣ୍ଡିଛୁ ଖାଲି ଯୁଗେ ଯୁଗେ,
କେତେ ଭଣ୍ଡ ମିଛୁଆ ତୁ ସତେ,
ତୁ ଅଛୁ ରଥ ଉପରେ, ତୁ ଝ ପୁଣି ପାଣି ତଳେ ତଳେ
ଅକ୍ରୂରର ମତିଭ୍ରମ ହେଲା ଯଦି,
ମୂର୍ଖ ଶବର କଣ କି ବୁଝିବ ସତେ ॥

ତୁ ଏତ ଆସିବୁ ଲେଉଟି,
ମଳିନ ଏ ଧରିତ୍ରୀକୁ ନୂଆ ଛଳନାରେ
ମନେଥିବ ଅଭିଶପ୍ତ ଜାରା କଥା ?
ବିକଟାଳ ଦେହଟାଏ, ଦ'ଥଡ଼ା ପାହାଡ଼,
ଟିମା ଟିମା ଆଖି ଦ'ଟା ସତେ ନଆଁ ଗାଡ଼
ଶବରର ବର୍ବରତା ଧନୁ ଓ ତୂଣୀର ।

ହୁଏତ ଜାଣିବୁ ସବୁ, ଦେଖିବୁ ମୋ
ନୂଆରୂପ, ଚହ୍ନିବୁ ମୋ ପୁରୁଣା ଆତ୍ମାକୁ,
ହୁଏତ ଏ ଦ୍ୱାପରରେ ତ୍ରେତା ଯୁଗ ଦେଖୁଛୁ ତୁ
ଜାଗାଠାରେ ଦେଖୁଅଛୁ କଳ୍କି ଛାୟା ବାଳୀଙ୍କୁ ।

ମୁଁ କିନ୍ତୁ ତ ଜାଣି ନାହିଁ, ଜାଣିବନି ତୋର ରୂପ,
ଚହ୍ନିବନି ନୂଆ ଦେହେ ଅଖିତର ଧନୁ ତୋର
ମେଘର ବରଣ; ମୃଗ ଆଖି କରୁଣାପୂରିତ
ତୋ' ଗ୍ରୀବର କଉସ୍ତୁଭମଣି,
କେଉଁ କିଆ ପତ୍ରପରି ତୋ ପାଦ ଦୁଇଟି,
ଯେଉଁଥିରେ ରଖିଗଲି ହତଭାଗ୍ୟ ଜୀବର ଏ ଶିର
ଜାଣିବନି, ପାରିବନି ଚହ୍ନି ।

ସବୁ ତ ଦେଖୁଛୁ ତୁଇ ବର୍ତ୍ତମାନ, ଭୂତ ଓ ଭବିଷ୍ୟ,
ସବୁ ତ ଜାଣୁଛୁ ତୁଇ ଜୀବନ ଓ ମରଣ ରହସ୍ୟ,
ଆମପାଇଁ ଖୋଲି ଦେଉ ବସୁନ୍ଧରା ଅବୁଝା ଅଂଧାର
ଛଳନାର ସେତେ ମାୟା ଜାଲ ।

ନଚିକେତାପରି ମୁଇଁ, ଜାଣିବାକୁ ମାଗୁ ନାଇଁ
ଜୀବନ ଓ ମରଣର ରହସ୍ୟ ଅମୋଘ,
କୁରୁକ୍ଷେତ୍ରେ ଅର୍ଜ୍ଜୁନର ବିଷାଦ ଖଂଡନ ବାଣୀ,
ଜ୍ଞାନ, କର୍ମ ଆଉ ଭକ୍ତିଯୋଗ ।

ହେ କପଠି, ହେ ନଷ୍ଠୁର, ହେ ଶିବ ସୁନ୍ଦର
ଲୋଡ଼ା ନାହିଁ ଦେଖିବାକୁ ବିଶ୍ୱରୂପ ତୋ'ର
ଯେଉଁଥିରେ ଜଳେ ସବୁ ଗ୍ରହ, ତାରା,
ଇନ୍ଦ୍ର, ଚନ୍ଦ୍ର, ନୀହାରିକା, ସୂର୍ଯ୍ୟ, ବୈଶ୍ୱାନର ।

ମାଗୁନି ମୁଁ ଜ୍ଞାନ ତୋର, ମାଗୁନି ମୁଁ ଅସୀମ ତୋ ସ୍ମୃତି
ହେ ମାୟାବି, ବିଶ୍ୱରୂପ, ଖାଲି ମୋର ଏତିକି ମିନତି
ଯୁଗେ ଯୁଗେ ଘର ମୋର ଦେଉ ତୋତେ,
ତୋ ଦେହରୁ, ତୋ ଆପଣା ଛଳନାରୁ ତୋତେଇ ମୁକତି,
ଯୁଗେ ଯୁଗେ କାନ୍ଦେ ମୁହିଁ, କହିଁ କହିଁ, କଂଅଡ଼ା ମୋ,
ବକ୍ଷେ ଯାଚି, କଅଁଳ ଏ ଛନ ଛନ
ଜୀମୂତୋଳ ରଂଗଳାପା ତୋ ପାଦ ଧଉଠି ।

# ଗ୍ରୀସୀୟ ଆଧାର ପ୍ରତି

ଶ୍ରୀନିବାସ ଉଦ୍‌ଗାତା



ଅମ୍ଳାନ ତୁହି ଏ ଅବଧି ଅଛୁ ଆଗୋ ଶାନ୍ତର ବଧୂ—
ଧୀର ସମୟ ଓ ଶାନ୍ତର ଆଗୋ ପାଳିତା କନ୍ୟା ତୁହି,
ତୁହି ଇତିହାସ, ବହୁ କଥା କହୁ ଶାନ୍ତ ନୀରବ ରହି
ପୁଷ୍ପିତ ବହୁ କାହାଣୀ ଅଟେ ଯା' ଛନ୍ଦରୁ ସୁମଧୁର ।

ଅଂକିତ କିବା କଥନିକା କେତେ ବୃନ୍ତ ସଜ୍ଜିତ ପତ୍ରର ଅଭିଲେଖ
ଶାଶ୍ୱତ ଦେବ ଅଥବା ପୂଜକ ଅବା ଉଭୟ ତୋ ଦେହେ-
ଆର୍କାଡ଼ି ଅବା ଟେମ୍ପେର ମୃତ ଭୂଇଁ
କେଉଁ ଦେବାଦେବ, କପଟୀ ମଣିଷ ତାହା ?
କ୍ରୀଡ଼ାରେ ବଧୂର କିଏ ?
ପାଗଳ ଅନ୍ୱେଷଣ ବା କିପରି, କି ବାଧା ଦେବାକୁ ପାରି ?
କେଉଁ ଆନନ୍ଦ ? ବାଜୁଛି କି ବେଣୁ ତୂର୍ଯ୍ୟ ?
ଶ୍ରୁତିର୍ ଗୀତ ତ ମଧୁର୍ କିନ୍ତୁ ଶ୍ରବଣ ଯା' ଶୁଣିନାହିଁ—
ସେ ମଧୁରତର, ବଂଶୀ ରାଗିଣୀ ତୋଳ——
ସେ ଛୁଇଁବ ନାହିଁ ଶ୍ରବଣେ ବାଜିବ ନାହିଁ
ଆତ୍ମାକୁ ସେହି କରିବ ଉତ୍ତରଳ ।

ପ୍ରଣୟୀ ଯୁଗଳ ଏ ତରୁ ତଳପ ପାରିବ ନାହିଁ ତ ଗୁଡ଼ି
ତୁମ ସଙ୍ଗୀତ ଅଥବା ଏ ଶାଖା ଶୂନ୍ୟ ହୋଇବ ନାହିଁ
ହେ ସାହସୀ ପ୍ରେମୀ ଚୁମ୍ବିବ ନାହିଁ ପାରିବନି ଛୁଟେ ଉତ୍ତ—
ବ୍ୟବଧାନ ଅତି ଅଳପ ହେଲେହେଁ—ଦୁଃଖିତ ହୁଅନାହିଁ
ମଳିନା ହେବନି ସେହି ସେ ତୁମକୁ ତୃପ୍ତ ନ କରୁ ପଛେ
ଚିରଦିନ ଥିବ ପ୍ରଣୟମଗ୍ନ, ସେ ଥିବ ମୁଗ୍‌ଧା ହୋଇ ।

ସୁଖୀ ଶାଖାଗଣ ତୁମ ଦେହ୍ନୁ କେବେ ପଡ଼ର ଝରିବ ନାହିଁ
ନବ ବସନ୍ତ ନେବନ ବିଦାୟ କେବେ,
ଐକ୍ୟତାନକ, କ୍ଲାନ୍ତ ତୁମର ଟିକିଏ ବୋଲି ତ ନାହିଁ
ସଦା ଗାଅ ତୁମେ ସୁଧା ସଂଗୀତ ନିତ୍ୟ ନୂତନ ହୋଇ
ସୁଖୀ ହୁଅ ପ୍ରେମୀ ଘନତର ହେଉ ସୁଖ
ଉଷ୍ଣତା ତା'ର ରହିଥିବ ଯେଣୁ ଉପଭୋଗ ଅଛି ବାକି
କାମନା-ପୂର୍ଣ୍ଣ ରହିଥିବ ସେହି ତର ଯୌବନ ପଖୀ ।

ତୃପ୍ତ ବାସନା ଆଣେ ଅବସାଦ, ହୃଦୟ ପ୍ଲାନ
ଶୀକାର ସର ଅର୍ଦ୍ଧ କରିବ ପ୍ରାଣ;
ଉଷ୍ଣ କପୋଳ ମଧୁର ଅଧର ହେବ ମ୍ଳାନ
କିଏ ତୁମେମାନେ ଆସୁଛ ଦେବାକୁ ବଳି
ଏ ସଘନ ଶ୍ୟାମ ବଧ୍ୟ ଭୂମିକୁ, ହେ ପାଗଳ ଅଜ୍ଞାତ
ନେଉଛୁ ଯେ ଧେନୁ ଆକାଶେ ଉଡ଼ିଛି ବନ୍ଦୀ ।

ରେଶମୀ ଦାମରେ ପୁଷ୍ପମାଳାରେ ବୃନ୍ଦ ମଣ୍ଡିତ ହୋଇ ?
କିଏ ବା ନଗଷ୍ଟ ନଦୀ ବା ସାଗର କୂଳେ
ଅବା ଦେବ ପଦେ ନିର୍ମିତ କେଉଁ ସୁଶାନ୍ତ ଗଡ଼
ନିର୍ଜନ କରି ଏ ପୂତ ପ୍ରଭାତେ ଯାଇଅଛ ତୁମେ
କେବଣ ଉକ୍ତ ଜନ ?

ହେ ନଗର ତୋର ନିର୍ଜନ ପଥ
ନୀରବ ରହିବ ସଦା,
ଗୋଟାଏ ଆତ୍ମା କହିବନ, କିପାଁ ତୋତେ ନିର୍ଜନ କରି
ଯେଉଁମାନେ ଗଲେ ସେମାନେ କେବେହେଁ
ଆସିବେନ ଆଉ ଫେରି ।

ରେ ଗ୍ରୀସୀୟ ଘଟ କୃଟିକମକର ରଂଜିତ ଶର୍ହିତ ।
ଅଙ୍କିତ ଯୁବା ଯୁବତୀ ମୂରତି ସୁନ୍ଦର ଶବଳିତ
ଅରଣ୍ୟ ଶାଖା ଶ୍ୟାମ ଦୂର୍ବାରେ ବେଷ୍ଟିତ ଚଳପଥ
ତୋ ନୀରବ ରୂପ ଆମ ଭାବନାର ଉତ୍ତର ଦିଏ ନାହିଁ—
ଅନନ୍ତ କାଳ ଯଥା । ରେ ଶୀତଳ ଘଟ
ଏନ୍ତୁକାଳ ଗଲେ ଏ ପୁରୁଷ ହେଲେ ଲୀନ
ଆଗାମୀ ଦିନର ଯନ୍ତ୍ରଣା କୋଳେ ବଂଚ ରହିବୁ ତୁହି
ସେତେବେଳେ ଆମ, ମଣିଷ ସଖାରେ, ତୁ କହୁ ଯାହାକୁ
ସୁଚରତା, ସତ ସତ ସୁଚରତା ବୋଲି—
ସେତିକ ତ ଜଣା ସେଇ ଜିଜ୍ଞାସା ଖାଲି ।

---

* John Keatsଙ୍କ 'Ode on a Grecian Urn'ର ଅନୁବାଦ ।

